

ନୀଳକଣ୍ଠ ଦ୍ୱିତୀୟଥର ବୁଝାଇଲା, ‘‘ବାଦାମର ଭିତର ଚୋପା ଖାଆନ୍ତି ନାହିଁ, ଚୋପା ଭିତରେ ଥିବାମଞ୍ଜିକୁ ଖାଇବା ଉଚିତ୍ ।’’

ପୁଣି ମାଙ୍କଡ଼ ଛୁଆଟି ନାସ୍‌ପାତିର ଗୋଟିଏ ଗଛ ଉପରେ ଚଢ଼ିଗଲା । ଗୋଟିଏ ନାସ୍‌ପାତି ତୋଳିଲା । ତାକୁ ହାତ ଗଣ୍ଠିରେ ପିଟି ପିଟି ଟୁକୁଡ଼ା ଟୁକୁଡ଼ା କରିଦେଲା ଏବଂ ନାସପାତି ର ମଞ୍ଜିକୁ ଖାଇବାକୁ ଲାଗିଲା । ‘‘ହାୟ ! ହାୟ ! ବହୁତ ପିତା ଲାଗୁଛି ।’’

ନୀଳକଣ୍ଠ ପୁଣି ଉଡ଼ିକରି ଆସିଲା ଏବଂ ପଚାରିଲା, ‘‘ସ୍ୱାଦ କେମିତି ଲାଗୁଛି ?’’ ଛୋଟ ମାଙ୍କଡ଼କୁ କ୍ରୋଧ ହେଲା । ନାସପାତିକୁ ନୀଳକଣ୍ଠ ଆଡକୁ ଫୋପାଡ଼ିଦେଲା ଏବଂ ଚିତ୍କାର କରି କହିଲା, ‘‘ମୁଁ କେବେ ଫଳ ଖାଇବି ନାହିଁ ।’’

- ଚୀନ୍‌ର କାହାଣୀ

हिन्दी से अनुवादः बिजय गोपाल ओझा





हिन्दी से अनुवादः बिजय गोपाल ओझा



कथा झरना
चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ମାଙ୍କଡ଼ଛୁଆଟି ଫଳ ଖାଇଲା



ଗୋଟିଏ ଦିନ ମାଙ୍କଡ଼ ଛୁଆଟିଏ ତରଭୁଜ କିଆରୀ ରେ ଯାଇ ପଶିଲା । ସେ ପ୍ରଥମ ଥର ତରଭୁଜ ଦେଖିଥିଲା । ସେ ଗୋଟିଏ ତରଭୁଜ କୁ ଫଟେଇଲା ଏବଂ ତା'ର ମୋଟା ଚୋପାକୁ ଖାଇବାକୁ ଲାଗିଲା ।



ମୁସ୍କିଲରେ ଦୁଇ ଥର ଖାଇଛି କି ନାହିଁ ତରଭୁଜକୁ ଫୋପାଡ଼ି କହିଲା, ‘‘ଛି ! ତରଭୁଜର ସ୍ୱାଦ ଭଲ ନୁହେଁ ।’’

ପାଖରେ ଛିଡ଼ାହୋଇଥିବା ବାଛୁରୀଟି କହିଲା, ‘‘ତରଭୁଜର ଭିତର ଶସ ଖାଇବା ଉଚିତ୍, ମୋଟା ଚୋପା ନୁହେଁ ।’’



ବାଛୁରୀ ର କଥା ପୂରା ନ ଶୁଣି ମାଙ୍କଡ଼ଟି ଦୌଡ଼ିବାକୁ ଲାଗିଲା । ଏବଂ କହିଲା, ‘‘ଶସ ଖାଇବାକୁ ହୁଏ, କିଏ ନ ଜାଣେ ?’’

ପୁଣି ମାଙ୍କଡ଼ଛୁଆଟି ଖରଭୁଜ କିଆରୀରେ ପହଞ୍ଚିଲା । ଗୋଟିଏ ଖରଭୁଜ ତୋଳିଲା ଏବଂ ତା’ ର ମଞ୍ଜି ଅଂଶ ଖାଇବାକୁ ଲାଗିଲା ।

ଗୋଟିଏ ଗଧ ଛୁଆ ତା’ ପାଖକୁ ଆସିଲା ଏବଂ କହିଲା, ‘‘ଆରେ ଭାଇ ! ଚୋପାତଳ କୋମଳ ଶସକୁ ଖାଇବା ଉଚିତ୍ । ତା’ର ମଞ୍ଜି ଅଂଶ କୁ ନୁହେଁ ।’’



ମାଙ୍କଡ଼ ଛୁଆଟି ମୁହଁରେ ଥିବା ଅଂଶ ଥୁକି ଦେଲା ଏବଂ କହିଲା, ‘‘ଏହା ତ ମୋତେ ଆଗରୁ ଜଣାଅଛି ।’’

ପୁଣି ମାଙ୍କଡ଼ ଛୁଆଟି ଗୋଟିଏ ବାଦାମ ଗଛ ଉପରେ ଚଢ଼ିଗଲା । ସେ ଗୋଟିଏ ବାଦାମ ଛିଡ଼ାଇଲା ଏବଂ ଖାଇବାକୁ ଲାଗିଲା । ସେତେବେଳେ ନୀଳକଣ୍ଠ ଚଢ଼େଇ ଉଡ଼ି ଉଡ଼ି ଆସିଲା ଏବଂ କହିଲା, ‘‘ବାଦାମର ବାହାର ଖୋଳପା ଖାଆନ୍ତି ନାହିଁ..... ।’’

ମାଙ୍କଡ଼ ଛୁଆଟି ତା କଥା ମାନିଲା ନାହିଁ ଏବଂ କହିଲା, ‘‘ମୋତେ ସବୁ ଜଣାଅଛି ।’’ ସେ ବାଦାମର ଭିତର ଚୋପାରେ ଦାନ୍ତ ପଶେଇଦେଲା । ‘‘ହାୟ ! ମୋ ଦାନ୍ତ ଭାଙ୍ଗିଗଲା,’’ ମାଙ୍କଡ଼ ଛୁଆଟି କଳାବାଜୀ ଦେଖାଇ ଗଛ ଉପରୁ ତଳକୁ ଡେଇଁ ପଡ଼ିଲା ।

୧୪)   ଆଖ-ପାଖରେ ଯଦି କିଛି ବନାଯାଉଥାଏ, ଶୀଘ୍ର ସେ କହିଦିଏ
ଗନ୍ଧ ହେଉ ବା ଦୁର୍ଗନ୍ଧ ତା' ଆଗେ କିଛି ଛୁପି ନ ଥାଏ ।

୧୫)   ତୁ ମିଠା, ତୁ ଖଟା - ପିତା, ତୋ' ଠାରେ ଲୁଣ କମ୍
ମୁଁ ଏ ସବୁ ବତାଇ ପାରେ ଏବଂ ଅଛିକି କାହାର ଦମ୍ ।

୧୬)   ଗଛ ପରେ ବସିଛି ଶୁଆ ଏବଂ ବତଖ ମାଛ ଖାଉଛି
କିଏ ସେ ମୋତେ ଶୀଘ୍ର କୁହ, ଯେ ମୋତେ ଏ ଦେଖାଉଛି ।

୧୭)   କୋଇଲି ସୁନ୍ଦର ଗାଏ, ଚୁଁ ଚୁଁ କରେ ଚଢେଇ,
କେମିତି ମୁଁ ଏ ସବୁ ଜାଣିଲି, ଚିଲାଉଛି ଯେ ହାତୀ ସେହି ।

୧୮)   ଶରୀରର କବଚ ଅଟେ, ସର୍ଦ୍ଦି ଗର୍ମୀ ଜାଣେ ମଡୁଆଲା
ପ୍ରତ୍ୟେକର ରଙ୍ଗ ଅଲଗା ଗୋରା ହେଉ ବା କଳା ।

(ନାକ, ଜିଭ, ଆଖି, କାନ, ଚର୍ମ)

हिन्दी से अनुवाद: बिजय गोपाल ओझा



कथा झरना
चित्रांकन: उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust





# ଆସ ଜାଣିବା



୧)   ଦୌଡି ଦୌଡି କରି, ପଡି ଉଠି
ଗାଢ ଭିତରୁ ସେ ଡିଆଁ ମାରି
ବହୁତ ଦୂର ଯାଏଁ ସେ ଚାଲିଯାଏ
ଜୀବଙ୍କର ସେ ତୃଷା ମେଣ୍ଟାଏ ।

୨)   ଗରୀବ ର ସେ ଅଟେ ବିଛଣା
ସବୁ ଜାଗା ପରେ ବିଛାଇ ହୋଇ
ଉଠାଇଲେ ସେ ଯେ ନ ଉଠାଇ ହୁଏ
ଏ ଅଜଣା ଟି ତେବେ କହ କିଏ ।



୩)   ବିନା ଶରୀର ଖେଳେ, ବୁଲେ, ଏମିତି ଖାସ୍
ବିନା ତାହାର କୌଣସି ପ୍ରାଣୀ ନିଏ ଶ୍ୱାସ
ବିନା ଦେଖାହୋଇ ଛୁଇଁ ଚାଲିଯାଏ ଏହା ହିଁ ତାହା ରହସ୍ୟ ।

୪)   କାଗଜ ଦେଲେ ସେ ଖାଇ ଯାଏ
ପାଣି ପିଇଦେଲେ ହିଁ ମରିଯାଏ ।





୫) ନୀଳ ରଙ୍ଗର ଛାତ ଅଛି ମୋ ଉପରେ
ଯାହାକୁ ମୁଁ ଧରି ନ ପାରେ
ଯେତେ ମୁଁ ତା’ ପାଖକୁ ଯାଏ
ଖାଲି ହାତ ଫେରିଥାଏ ।

୬) ଆକାଶ ରେ ଚମକୁ ଥାଏ
ଘଡଘଡି ଶବ୍ଦ କରେ
ମୋ ଉପରେ କାହାର ପଡିଲେ ନଜର
ପଲକେ ଆଖି ବନ୍ଦ ହୋଇଯାଏ ତା’ର ।

୭) ‘‘ଝମ୍ ଝମା ଝମ୍ ଖୁବ୍ ବରଷେ
ସେ ଆସିଲେ ତ ଧରା ହସେ ।’’

୮) ଆକାଶରେ ମୁଁ ଉଡିବୁଲୁଥାଏ
ବାଷ୍ପ ବୁନ୍ଦାରେ ମୋର ପ୍ରାଣ
ଗୋରା ରୁ ଯେବେ ହୁଏ କଳା
ବରଷି ପଡେଁ ଆପେ ହୋଇ ଅଜ୍ଞାନ ।

୯) ଗୋଟିଏ ବଗିଚା ଅଟେ ଏହିପରି, ରାତିରେ ଫୁଲ ଫୁଟେ
ସକାଳ ହେଲେ ଶୋଇଯାଆନ୍ତି, ନ ଆସନ୍ତି କା’ର ହାତେ ।





୧୦) ଡେଇଁ ଡେଇଁ କରି କୁଦେ ଗାଏ
ପ୍ରାଣୀମାନଙ୍କ ହୃଦରେ ସମାଏ
ନଦୀମାନଙ୍କୁ ହିଁ ଗଳାରେ ଲଗାଏ
ଦୁନିଆ କୁ ମୁଁ ଘେରି ରହିଥାଏ ।

୧୧) ସବୁଠୁଁ ବଡ ଧନୁ ଅଟେ ମୁଁ
ସାତଟି ରଙ୍ଗ ମୋର ।
ଯେତେ ଚାହିଁଲେ ଧରିବାକୁ ମୋତେ
ମୁଁ ଆସେନା ହାତେ କାହାର ।

୧୨) ତା’ ବିନା ପୃଥ୍ୱୀ ଘୁରେନା, ନ ଥାଏ ଫସଲେ ପ୍ରାଣ
ନା ରାତି, ନା ଦିନ ହୁଏ, ହୁଏନା ଗ୍ରୀଷ୍ମ ବା ଶ୍ରାବଣ ।

୧୩) ଆକାଶରେ ଥାଏ ମୁଁ, ମାମୁଁ ମୁଁ ସବୁ ପିଲାମାନଙ୍କର
ଦିନରେ ଲୁଚେ, ରାତିରେ ବାହାରେ, ଏ ସଂରଚନା ଈଶ୍ୱରର ।

ପବନ, ବର୍ଷା, ପୃଥ୍ୱୀ, ଇନ୍ଦ୍ରଧନୁ,
ଆକାଶ, ସୂର୍ଯ୍ୟ, ବିଜୁଳି, ଚନ୍ଦ୍ର,
ଅଗ୍ନି, ତାରା, ମେଘମଳୟ, ପାଣି, ସମୁଦ୍ର



# ମୂଷା ଙ୍କ ପଦଯାତ୍ରା

ମୂଷା ଧରିବା ପାଇଁ ବିଲେଇ ରାଣୀ ଗୋଟିଏ ଯୋଜନା ବନାଇଥିଲା ।

ଦିନେ ବିଲେଇଟି ନିଜ ଆଖପାଖରେ ରହୁଥିବା ସବୁ ମୂଷାମାନଙ୍କୁ ଡାକିଲା ଏବଂ କହିଲା, ‘‘ବନ୍ଧୁମାନେ ! ମୁଁ ଏତେଦିନ ହେଲା ତୁମମାନଙ୍କୁ ବହୁତ ହଇରାଣରେ ପକାଇଆସିଥିଲି । ମୋତେ ସେଥିପାଇଁ ବହୁତ ଅବଶୋଷ ହେଉଛି । ଆଗକୁ ତୁମମାନଙ୍କୁ ଶାନ୍ତିରେ ବଂଚି ରହିବାକୁ ଦେବାକୁ ଚାହୁଁଛି । ମୋର ଗୋଟିଏ ନିବେଦନ ଅଛି । ତୁମେମାନେ ସବୁ ସକାଳ ଏବଂ ସନ୍ଧ୍ୟାରେ ଗୋଟିଏ ଧାଡ଼ିରେ ମୋ ଆଗକୁ ଆସିବ । ମୋତେ ନମସ୍କାର କରି ଫେରିଯିବ । ଏତିକି ମାତ୍ର କରିବ ।’’ ମୂଷାମାନେ ବି ଖୁସିରେ ହଁ ଭରିଦେଲେ ।

ବିଲେଇ ପ୍ରତିଦିନ ଗୋଟିଏ ସିଂହାସନ ଉପରେ ବସିଯାଏ । ମୂଷାମାନେ ଗୋଟିଏ ଧାଡ଼ିରେ ଆସନ୍ତି । ନମସ୍କାର କରି ଆଗକୁ ବଢି ଯାଆନ୍ତି । ଯେଉଁ ମୂଷା ଟି ଶେଷରେ ଆସେ ତାକୁ ବିଲେଇଟି କୁଦା ମାରି ଧରିପକାଏ । ବାକି ମୂଷା ମାନଙ୍କୁ ବିଲେଇର ଚାଲାକି ଜଣା ପଡ଼େନା ।

ବାସ୍ ! ବିଲେଇ ଆଉ ସହ୍ୟ କରିପାରି ନ ଥିଲା । ମୂଷାମାନଙ୍କ ଉପରେ କୁଦିପଡ଼ିଲା ।

ମୂଷାମାନେ ପୂର୍ବରୁ ସତର୍କ ଥିଲେ । ସେମାନେ କ’ଣ ବିଲେଇ ଫାନ୍ଦରେ ଟିକିଏ ପଡ଼ିବାର ଥିଲେ ! ବିଜୁଳି ଭଳି ଦୌଡ଼ି ପଳାଇଗଲେ ! ବିଲେଇ ହାତ ମଳି ରହିଗଲା ।

- ତିବ୍ବତର ଲୋକକଥା

हिन्दी से अनुवादः बिजय गोपाल ओझा



कथा झरना
चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

ଏହି ମୂଷାଦଳରେ ଅମ୍ଭୋ-ଶମ୍ଭୋ ନାମକ ଦୁଇ ଚାଲାକ ମୂଷା ଥିଲେ । ସେମାନେ ଜାଣି ଗଲେକି  ମୂଷା ମାନଙ୍କ ସଂଖ୍ୟା କମ୍ ହେଉଛି । ଦୁଇ ଜଣ ମିଶି ଗୋଟିଏ ଯୋଜନା ବନାଇଲେ । ଅମ୍ଭୋ ଧାଡ଼ିର ସବା ଆଗରେ ଏବଂ ଶମ୍ଭୋ ସବା ଶେଷରେ ଯିବାର ନିଷ୍ପତ୍ତି ନେଲେ ।

ଅମ୍ଭୋ ଆଗରେ ଛିଡ଼ା ହୋଇ ଡାକିଲା, ‘‘ଶମ୍ଭୋ ତୁ କେଉଁଠି ?’’ ଶମ୍ଭୋ ଶୀଘ୍ର ଜବାବ୍ ଦେଲା, ‘‘ଅମ୍ଭୋ ! ମୁଁ ଏଇଠି !’’ ଏହି ଭଳି ଧାଡ଼ିରେ ଯିବା ବେଳେ ଜଣେ ଅନ୍ୟଜଣକୁ ଡାକ ପକାଉଥିଲା ।

ବିଲେଇ କିଛି କରି ପାରିଲା ନାହିଁ । ଯଦି ସେ ଶେଷ ମୂଷାଟିକୁ ଖାଇବ ତ ତା’ର ରହସ୍ୟ ଜଣା ପଡ଼ିଯିବ ! ସେ ଦିନ ବିଲେଇ ଭୋକରେ ରହିଗଲା । ଶୋଇପାରି ନ ଥିଲା ।

ତା’ ପରଦିନ ଶମ୍ଭୋ ଧାଡ଼ିରେ ଆଗେ ଏବଂ ଅମ୍ଭୋ ଧାଡ଼ିର ଶେଷରେ ଛିଡ଼ା ହୋଇଗଲେ । ଜଣେ ଅନ୍ୟଜଣକୁ ଡାକି ଡାକି ଆଗକୁ ବଢ଼ିଲେ । ବିଲେଇ ସେ ଦିନ ବି ମୂଷାକୁ ଧରିପାରି ନ ଥିଲା ।

‘ଆଉ ଗୋଟିଏ ଦିନ ଦେଖିବି,’ ଭାବି ବିଲେଇଟି ନିଜର କ୍ରୋଧକୁ କାବୁକଲା । ସେ ରାତି ଅମ୍ଭୋ ଏବଂ ଶମ୍ଭୋ



ଦୁଇଜଣ ତାଙ୍କ ମୂଷା ସାଥିମାନଙ୍କୁ ଚେତାଇଦେଇଥିଲେ, ‘‘ବିଲେଇ ଚେହେରା ଟିକିଏ ବି କ୍ରୋଧିତ ଦେଖାଗଲେ ସେମାନେ ଯଥାଶୀଘ୍ର ସେଠାରୁପଳାଇଯିବେ ।’’

ବିଲେଇ ଭାବିଲା, ‘‘ଆଜି ଯେଉଁ ଘଟଣା ଘଟିଗଲା ହୁଏତ ଅଜାଣତ ରେ ହୋଇପାରେ । କାଲି କୌଣସି ପ୍ରକାର ଶେଷ ମୂଷାକୁ ଧରିନେବି ।’’

ତା’ ପର ଦିନ ମୂଷାମାନଙ୍କ ପଦଯାତ୍ରା ଆରମ୍ଭ ହେଲା । ସବୁଦିନ ଭଳି ଅମ୍ଭୋ ଡାକଦେଲା, ‘‘ଶମ୍ଭୋ ତୁମେ କେଉଁଠି ?’’



ନୀଳ, ହଳଦିଆ, କଳା, ଲାଲ ଏମିତି କେତେ ରଙ୍ଗର କପଡାର ଟୁକୁଡା ଜୋଡି କରି ଦରଜୀ ଗୋଟିଏ ବଡ଼ କୋଟ ସିଲେଇ କରିବାକୁ ଲାଗିଲା । ଏଥିରେ କିଛି ଦିନ ଲାଗିଗଲା । କୋଟ ଦେଖିବାକୁ ଲାଜବାବ୍ ଥିଲା ।

ଦରଜୀ ତାକୁ ଚାନ୍ଦ ପାଖକୁ ନେଇଗଲା । କିନ୍ତୁ ଏବେ ଚାନ୍ଦ କ'ଣ ଗୋଲ ଥିଲା ? କୋଟ ତା' ପାଇଁ ବହୁତ ବଡ ଥିଲା ।

ଚାନ୍ଦ ବଡ଼-ବଡ଼ ହୋଇ କହିଲା, ‘‘ଏମିତିକା ଢିଲା କୋଟ ମୋତେ ସର୍ଦ୍ଦିରୁ କେମିତି ବଂଚେଇ ପାରିବ ?’’

‘‘ମୋତେ କ'ଣ ଜଣା ?’’ କ୍ରୋଧରେ ଦରଜୀ ଚିତ୍କାର ଇଲା ।

ସୁପ୍ରସିଦ୍ଧ ଦର୍ଜୀ - ଏତେ ବର୍ଷର କମେଇଥିବା ଯଶ ଯେପରି ପାଣିରେ ପଡିଲା ।

ବିଚାରା ଦର୍ଜୀ ! ଯେବେ ସେ ଚାନ୍ଦ କୁ ଦେଖେ ନିଜର ଦାନ୍ତ ଦବେଇନିଏ ।

- ନିରୂପମା ରାଘବନ ଙ୍କ ଲିଖିତ ରୁଷ ଦେଶର କଥା।

हिन्दी से अनुवादः बिजय गोपाल ओझा



कथा झरना

चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



# ଚାନ୍ଦ ଏବଂ ଦରଜୀ

ଶୀତ ଦିନ ଥିଲା । ଦରଜୀ ନିଜର ଦୋକାନ ଜଲ୍‌ଦି ବନ୍ଦ କରି ଦେଇ କିଛି ଭାବି ଭାବି ରାସ୍ତାରେ ଚାଲିବାକୁ ଲାଗିଲା । ସେହି ସମୟରେ ତାକୁ ଧୀରେ କିଏ କହୁଥିବାର ଶୁଭିଲା, ‘‘ମୋତେ ବହୁତ ଥଣ୍ଡା ଲାଗୁଛି । ରାତିରେ ମୋତେ ବହୁତ ଲମ୍ବା ରାସ୍ତା ଯିବାକୁ ପଡ଼ିବ । କଣ ତୁମେ ମୋତେ ଗୋଟିଏ ଗରମ କୋଟ ସିଲାଇ କରି ଦେଇପାରିବ ?’’



‘ଶବ୍ଦ କେଉଁଠୁ ଆସୁଛି ?’ ଦରଜୀ ଏପଟ ସେପଟ ଦେଖିବାକୁ ଲାଗିଲା ।

‘‘ଦେଖ ! ମୁଁ ଏଠି ଅଛି,’’ କଥା କହୁଥିବା ଲୋକ ଆଉ କେହି ନ ଥିଲା, ଚାନ୍ଦ ଥିଲା । ସେ ସଙ୍କୁଚିତ ହୋଇ ଅଧା ଚାନ୍ଦ ଭଳି ଥିଲା । ଦରଜୀ ଭାବିଲା, ‘‘ସର୍ଦ୍ଦିରୁ ବୋଧ ହୁଏ ଚାନ୍ଦ ଛୋଟ ହୋଇଯାଇଛି ।’’ ସେ ଚାନ୍ଦକୁ କଥା ଦେଲା କି କିଛି ଦିନ ଭିତରେ ସେ ଗୋଟିଏ କୋଟ ସିଲେଇ କରିଦେବ ।

ଦରଜୀ ବଳି ପଡ଼ିଥିବା ଟୁକୁଡ଼ା କପଡ଼ା ଖୋଜି ବାହାର କଲା ଏବଂ ଅଧା ଚାନ୍ଦ ଆକାରରେ ଗୋଟିଏ କୋଟ ବନାଇଲା ।

‘‘ବହୁତ ସୁନ୍ଦର ବନିଛି,’’ କହି ଚାନ୍ଦ ସେ କୋଟ କୁ ପିନ୍ଧିବାକୁ ଚେଷ୍ଟା କଲା । କିନ୍ତୁ ଅବଶୋଷ ! ସେ ତା ଭିତରେ ପଶି ପାରିଲାନି ।

ମୁହଁ ଛୋଟ କରି ଚାନ୍ଦ କହିଲା, ‘‘ମୋତେ ଜଣା ଥିଲା । ତୁମେ ତ ମୋର ମାପ ନେଇ ନ ଥିଲ । ପୁଣି କୋଟ କେମିତି ଠିକ୍ ହେବ ?’’

ଦର୍‌ଜୀ କହିଲା, ‘‘ତୁମର ମାପ ମୁଁ କେମିତି ନେଇ ପାରିବି ?’’

ଗୋଟିଏ ଚିଲ ଦୁଇଜଣକ କଥା ଶୁଣୁଥିଲା । ସଙ୍ଗେ ସଙ୍ଗେ କହିଲା, ‘‘ଦରଜୀ ଭାଇ ! ମାପ ଫିତା ମୋତେ ଦିଅ । ଚାନ୍ଦର ମାପ ମୁଁ ନେଇକରି ଆସିବି ।’’

ଚିଲ ଚାନ୍ଦର ସବୁ ପାଖ ଘୁରି ଉଡ଼ିଗଲା । ଧ୍ୟାନର ସହିତ ମାପ ନେଲା ଏବଂ ଦରଜୀକୁ ଦେଲା ।

ସେ ଦିନ ପର୍ବର ଦିନ ଥିଲା । ଗୋଟିଏ ସପ୍ତାହ ପରେ ହିଁ ଚାନ୍ଦର କୋଟ ସିଲେଇ କରିପାରିଲା ।

କୋଟ ଉପରେ ବିଭିନ୍ନ ପ୍ରକାର କାରିଗରୀ ଦେଖି ଚାନ୍ଦ ବଡ଼ ଖୁସି ହେଲା । ସେ ରହିପାରିଲାନି । ଜଲ୍‌ଦି ଜଲ୍‌ଦି କୋଟ ପିନ୍ଧିବାକୁ ଲାଗିଲା । କିନ୍ତୁ ବହୁତ ଚେଷ୍ଟା କଲା ପରେ ମଧ୍ୟ ସେ ତା’ ଭିତରେ ପଶି ପାରି ନ ଥିଲା ।





‘‘ତୁମେ ହିଁ ଦେଖ ! ଖାଇ ଖାଇ କରି ତୁମେ କେତେ ମୋଟା ହୋଇ ଯାଇଛ । ଏ କୋଟ ତୁମକୁ କେବେ ଠିକ୍ ହେବନାହିଁ,’’ ରାଗରେ ଦରଜୀ ଚିତ୍କାର କଲା ।

ଚାନ୍ଦ କହିଲା, ‘‘ସବୁ ଭୁଲ୍ ତୁମର ଅଟେ । କୋଟ ସିଲାଇରେ ତୁମେ ଏତେ ଦିନ କାହିଁକି ଲଗାଇଲ ?’’

ପୁଣି ନିବେଦନ କଲା, ‘‘ବାସ୍ ଆଉ ଥର ଟିଏ ସିଲାଇ କରିଦିଅ !’’

‘‘ଆହୁରି ମୋଟା ତ ହୋଇଯିବ ନାହିଁ ?’’ ଏହା କହି ଦରଜୀ ଚାଲିଗଲା ।



# ⑤ ଲାଜବାବ୍ ବବ୍ଲୁ

ବବ୍ଲୁ ବାରମ୍ବାର ନିଜ ପିଉସୀଘରକୁ ଯିବା ଆସିବା କରୁଥିଲା । ପିଉସୀ ବବ୍ଲୁହାତରେ ତା ମା ପାଇଁ କିଛି ନା କିଛି ଦେଇ ପଠାଉଥିଲେ ।

ଦିନେ ପିଉସୀ ବବ୍ଲୁର ହାତରେ ବଡ଼ ଖଣ୍ଡେ ପିଠା ଦେଲେ । ବବ୍ଲୁ ତାକୁ ହାତରେ ଜୋର କରି ଧରି ଘର ଆଡ଼କୁ ଚାଲିଲା । ଘରେ ପହଞ୍ଚିଲା ବେଳକୁ ପିଠା ଭାଙ୍ଗି କରି ଚୁର୍ ଚୁର୍ ହୋଇଯାଇଥିଲା ।

ମା' କହିଲେ, ''ବବ୍ଲୁ ପିଠାକୁ ଏହିପରି ଭାବରେ ଟିକେ ଆଣନ୍ତି । ତାକୁ ପତ୍ରରେ ତିଆରି ଥାଳିରେ ଭରି ନିଜ ଟୋପି ଭିତରେ ରଖି ଆଣନ୍ତି । ତା'ହେଲେ ରାସ୍ତାରେ ମାଙ୍କଡ଼ମାନେ ଆଉ ହଇରାଣ କରିବେନି ।''

ଆଗ ସପ୍ତାହରେ ବବ୍ଲୁ ପୁଣି ପିଉସୀ ଘରକୁ ଗଲା । ଏଥର ପିଉସୀ ତାକୁ କିଛି ଲହୁଣୀ ଦେଲେ । ବବ୍ଲୁ ସେ ଲହୁଣୀକୁ ପତ୍ରର ଥାଳିରେ ଭରି ଟୋପି ଭିତରେ ରଖିଦେଲା ଏବଂ ଖୁସିରେ ଘର ଆଡ଼କୁ ଚାଲିଲା ।

ତାର ଆଗ ସପ୍ତାହରେ ମା' ବବ୍ଲୁକୁ କହିଲେ, ''ଆଜି ତୁ ପିଉସୀ ଘରକୁ ଯିବୁ ନାହିଁ । ମୁଁ ନିଜେ ତୋ ପିଉସୀର ଘରକୁ ଯିବି । ମୁଁ ଏଠାରେ ପାପଡ଼ ଶୁଖାଇବା ପାଇଁ ରଖିଛି । ଦେଖିକରି ଯିବୁ ।''

ମା' ପିଉସୀର ଘରକୁ ଚାଲିଗଲେ । ବବ୍ଲୁ ପାପଡ଼କୁ ବୁଲିକରି ଦେଖିଲା, ତା' ପରେ ସେ ଗୋଟିଏ ପରେ ଗୋଟିଏ ପାପଡ଼ ଉପରେ ପାଦରଖି ବହୁତ ଧ୍ୟାନରେ ଚାଲିଲା ।

ବବ୍ଲୁର ମା' ଘରକୁ ଫେରିଲା ପରେ କଣହେଲା, ତା'ତ କାହାକୁ ଜଣା ନାହିଁ । ହେଲେ ନିଜେ ହିଁ ଅନୁମାନ କରିପାରିବେ !

- ଯୁରୋପ ର ଲୋକ କଥା

हिन्दी से अनुवादः बिजय गोपाल ओझा


कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



ଖରା ସେଦିନ ବହୁତ ଟାଣ ଥିଲା । ଲହୁଣୀ ତରଳିବାରେ ଲାଗିଲା । ଘରେ ପହଞ୍ଚିଲା ବେଳକୁ ଲହୁଣୀ ବହି ତା ମୁହଁ ଓ ପୋଷାକରେ ଲାଗିଗଲା ।

ମା' ଆଶ୍ଚର୍ଯ୍ୟ ଚକିତ ହୋଇଗଲେ, ''ହେ ଭଗବାନ ! ଲହୁଣୀକୁ କିଏ ଏହିପରି ଭାବରେ ଆଣେ ? ତାକୁ ଥଣ୍ଡାପାଣିରେ ରଖିକରି ଆଣିବାର ଥିଲା ।''

ଆଗ ସପ୍ତାହରେ ପିଉସୀ ତାକୁ ଗୋଟିଏ କୁକୁର ଛୁଆ ଦେଲେ । ବବ୍‌ଲୁ ତାକୁ ଥଣ୍ଡାପାଣିରେ ରଖି ଘରଆଡ଼କୁ ଚାଲିଲା ।

ମା' ଶିର ପିଟି କରି କହିଲେ, ''ବିଚରା କୁକୁର ଛୁଆଟିର କି ଅବସ୍ଥା କରିଦେଲୁ ! ଆଗଥର କୁକୁରଛୁଆଟିର ବେକରେ ରଶି ବାନ୍ଧିବୁ । ରଶିର ଅନ୍ୟ ଭାଗକୁ ହାତରେ ଧରି, ତାକୁ ଚଲାଇ କରିଆଣିବୁ ।''

ଛୁଟିରେ ବବ୍‌ଲୁ ପୁଣି ପିଉସୀ ଘରକୁ ଗଲା । ଏଥର ପିଉସୀ ତାକୁ ପାଉଁରୋଟି ଦେଲେ । ବବ୍‌ଲୁ ପାଉଁରୁଟି କୁ ରଶିରେ ବାନ୍ଧି ତାର ଅନ୍ୟଭାଗକୁ ହାତରେ ଧରି ପାଉଁରୁଟି କୁ ଘୋଷାଡ଼ି କରି ଘରେ ପହଞ୍ଚିଲା । ଏସବୁଦେଖି ତା ମା' ଆଶ୍ଚର୍ଯ୍ୟ ରେ ଅବାକ୍ ହୋଇଗଲେ ।



ଗୁଣ୍ଡୁଚିମୂଷା : କ'ଣ ତୁ ଚିତା ବାଘ ସହ ମିଳିବାକୁ ଯାଉଛୁ ?

ଠେକୁଆ : ନା, ନା, ସେ ତ ମୋତେ ଖାଇଯିବ । ମୋ ମିତ୍ରର ଆଗ ଗୋଡ଼ରେ ଗୋଜିଆ ନଖ ନାହିଁ ।

ଗୁଣ୍ଡୁଚିମୂଷା : ଏବେ ତ ଜାଣିବା ଆହୁରି ସହଜ ହୋଇଯାଇଛି । ତୁ ହରିଣ ସହ ମିଳିବାକୁ ଯାଉଛୁ ନା !

ଠେକୁଆ : ନାଁ, ଠିକ୍ ଅଛି ମୁଁ ତା'ହେଲେ ଉତ୍ତର କହି ଦେଉଛି । ତା'ର ବେକ ଲମ୍ବା ଅଟେ ।

ଗୁଣ୍ଡୁଚିମୂଷା : ଜାଣିଗଲି ! ତୁ ଜିରାଫ୍ କଥା କହୁଛୁ !

ଠେକୁଆ : ଏତେ ଡେରି ଲାଗିଲା ଜାଣିବାକୁ ! ତୁ ମଧ୍ୟ ସାଥିରେ ଚାଲ । ମୋ ମିତ୍ରର ପିଠି ଉପରେ ବସି ଜଙ୍ଗଲରେ ବୁଲିବା ।

हिन्दी से अनुवादः बिजय गोपाल ओझा



कथा झरना

चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ମିତ୍ର ଙ୍କୁ ଚିହ୍ନିବା





ଏହି ଜଙ୍ଗଲରେ ଗୋଟିଏ ଗୁଣ୍ଡୁଚିମୂଷା ଏବଂ ଗୋଟିଏ ଠେକୁଆ ମଧ୍ୟରେ ଭଲ ମିତ୍ରତା ଥିଲା । ଗୁଣ୍ଡୁଚିମୂଷା ଟି ଭାରି ଗପୁଡ଼ି ଥିଲା । ପ୍ରତ୍ୟେକଙ୍କ ବିଷୟରେ ସବୁକିଛି ଜାଣିବାକୁ ଚାହୁଁଥିଲା । ଠେକୁଆଟି ଚୁପ୍ ଚାପ୍ ରହୁଥିଲା । କୌଣସି ପ୍ରଶ୍ନର ଉତ୍ତର ସିଧା ଦେଉ ନ ଥିଲା ।



ଗୁଣ୍ଡୁଚିମୂଷା : ଆରେ, ଟିକିଏ ରହିଯା । ଏତେ ସକାଳୁ-ସକାଳୁ ଗୀତ ଗାଇ ଗାଇ କୁଆଡେ ଯାଉଛୁ ?

ଠେକୁଆ : ମୋ ନୂଆ ମିତ୍ର ସାଥିରେ ଖେଳିବାକୁ ଯାଉଛି ।

ଗୁଣ୍ଡୁଚିମୂଷା : କିଏ ତୋର ସେ ନୂଆ ମିତ୍ର ?

ଠେକୁଆ : ଅଛି ଜଣେ ଯାହାର ଚାରିଟା ଗୋଡ । ତୁ ନିଜେ ବୁଝ୍ ।





ଗୁଣ୍ଡୁଚିମୂଷା : ଆରେ ! ଆମେ ସମସ୍ତେ ତ ଚାରି ଗୋଡ ବାଲା ଅଛୁଁ । ଏବେ ବୁଝିଲି ତୁ ମୋତେ କହିବାକୁ ଚାହୁଁନୁ । ଠିକ୍ ଅଛି, ମୁଁ ହିଁ ଜାଣିନେବି । କ'ଣ, ସେ ଏକ ବଡ଼ ପଶୁ ?

ଠେକୁଆ : ହଁ ।

ଗୁଣ୍ଡୁଚିମୂଷା : ତୁ, ହାତୀ ସହ ମିଳିବାକୁ ଯାଉଛୁ ନା ? ସେ ତ ସବୁଠାରୁ ବଡ଼ ପଶୁ ଅଟେ ।

ଠେକୁଆ : ବିଲ୍‌କୁଲ୍ ନୁହେଁ । ମୋ ମିତ୍ରର ଶୁଣ୍ଢ ନାହିଁ ।

ଗୁଣ୍ଡୁଚିମୂଷା : ତୋର ମିତ୍ର କ'ଣ ଗଣ୍ଡା ? ତା'ର ତ ଶୁଣ୍ଢ ନାହିଁ ।

ଠେକୁଆ : ନାଁ ! ନାଁ ! ମୋ ମିତ୍ରର ଶିଙ୍ଘ ମଧ୍ୟ ନାହିଁ ।

ଗୁଣ୍ଡୁଚିମୂଷା : ଓ ! ତା' ହେଲେ ସେ ନିଶ୍ଚୟ ଓଟ ହେବ । ତା'ର ଚାରିଟା ଗୋଡ଼ ଅଛି । ଶୁଣ୍ଢ ନାହିଁ । ଶିଙ୍ଘ ବି ନାହିଁ ।

ଠେକୁଆ : ନାଁ ! ମୋ ମିତ୍ରର ପିଠିରେ ଓଟ ଭଳି କୁଜ ମଧ୍ୟ ନାହିଁ ।





ଗୁଣ୍ଡୁଚିମୂଷା : ପୁଣି କିଏ ହୋଇପାରେ ? ତେବେ କ'ଣ ଜେବ୍ରା ତୋ ମିତ୍ର ?

ଠେକୁଆ : ନାଁ, ମୋ ମିତ୍ରର ଶରୀର ଉପରେ ଗାର ଗାର ଚିହ୍ନ ନାହିଁ ।

ଗୁଣ୍ଡୁଚିମୂଷା : ତା'ହେଲେ ଭାଲୁ ତୋ'ର ମିତ୍ର ହେବ । ତା' ଦେହରେ ଗାର ଗାର ଚିହ୍ନ ନାହିଁ । ତା'ର କୁଜ ନାହିଁ । ଶିଙ୍ଘ ନାହିଁ ଏବଂ ଶୁଣ୍ଢ ମଧ୍ୟ ନାହିଁ ।

ଠେକୁଆ : ନା' ବାବା ! ମୋ ମିତ୍ର ଦେହରେ ଭାଲୁ ଭଳି ଘନ ବାଳ ମଧ୍ୟ ନାହିଁ ।

ଗୁଣ୍ଡୁଚିମୂଷା : ଏମିତି କି ? ରହ ! କ'ଣ ତୋ ମିତ୍ରର ଶରୀର ଉପରେ ଦାଗ ଅଛି ?

ଠେକୁଆ : ହଁ, ଅଛି ।



ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ ଯେବେ ବି କୁକୁରଟି ବିଲେଇକୁ ଦେଖେ ସେ ତାକୁ ସନ୍ଧିପତ୍ର ମାଗିବାକୁ ତା'ପଛେ ପଛେ ଦୌଡ଼େ । ମୂଷାର କାର୍ଯ୍ୟ ପାଇଁ ବିଲେଇ ତା'ଉପରେ ରାଗିକରି ତା' ପଛେ ପଛେ ଦୌଡ଼େ । ଆଜି ପର୍ଯ୍ୟନ୍ତ ଏ ତିନିଜଣ ଜଣେ ଅନ୍ୟଜଣଙ୍କର ପଛେ ପଛେ ଦୌଡ଼ୁଥାଆନ୍ତି ।

- ରୁମାନିଆଁ ର ଲୋକ କଥା

हिन्दी से अनुवादः बिजय गोपाल ओझा


कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



# ଏ ଦୌଡ଼ କାହିଁକି

ସୃଷ୍ଟିର ଆରମ୍ଭରେ କୁକୁର, ବିଲେଇ, ଏବଂ ମୂଷା ତିନୋଟି ପଶୁ ମିଳିମିଶି ଜୀବନ ବ୍ୟତୀତ କରୁଥିଲେ । ସେମାନେ ସବୁ ନିଜ ନିଜ କାମରେ ବ୍ୟସ୍ତ ରହୁଥିଲେ ।

ନିଜ ଭିତରେ ଏକତା ବନାଇ ରଖିବାକୁ ସେମାନେ ଏକ ସନ୍ଧିପତ୍ର ବନାଇଥିଲେ ଏବଂ ବିଲେଇଟି ତାକୁ ମଞ୍ଚା ଉପରେ ସମ୍ଭାଳି ରଖିଥିଲା । ସନ୍ଧିପତ୍ର ଅନୁସାରେ କୁକୁରଟିକୁ ଘରର ବାହାର କାମ ଏବଂ ବିଲେଇ ଓ ମୂଷା କୁ ଘର ଭିତର ର କାମ କାର୍ଯ୍ୟ ସମ୍ଭାଳିବାର ଥିଲା ।





କିଛି ଦିନ ପରେ କୁକୁରଟି ନିଜ କାମ ଉପରେ ବିରକ୍ତ ହୋଇଗଲା । ସେ କ୍ରୋଧରେ ବିଲେଇକୁ କହିଲା, ‘‘କେବଳ ମୁଁ ଥଣ୍ଡାରେ ଏବଂ ବର୍ଷାରେ ଘର ବାହାରେ ରହି ରକ୍ଷା କରୁଛି । କିନ୍ତୁ ମୂଷା ଆଉ ତୁମେ ଘର ଭିତରେ ଶାନ୍ତିରେ ରହୁଛ ।’’

ବିଲେଇଟି କହିଲା, ‘‘କଣ ଆମ ଭିତରେ ହୋଇଥିବା ରାଜିନାମା ତୁମର ମନେନାହିଁ ?’’

କୁକୁରଟି କହିଲା, ‘‘କେଉଁଠି ଅଛି ସେ ସନ୍ଧିପତ୍ର ? ଆଣ, ଆମେ ପୁଣି ତାକୁ ଦେଖିବା ।’’

ବିଲେଇଟି ମଞ୍ଚା ଉପରେ ଚଢି ଦେଖିଲା କି ମୂଷା ତାକୁ କାଟି କୁଟି ଛୋଟ ଛୋଟ ଟୁକୁଡା କରି ଦେଇ ତାକୁ ବିଛାଇ ତା’ ଉପରେ ଶୋଇଛି ।

ବିଲେଇ ରାଗରେ ଜଳି ଉଠିଲା । ସେ ମୂଷା ଉପରେ ଆକ୍ରମଣ କରିବାକୁ ଚାହିଁଲା, କିନ୍ତୁ ମୂଷା ଦୌଡି ପଳାଇଗଲା । ବିଲେଇ ତାକୁ ଧରିପାରିଲାନି । ତା’ ପଛେ ପଛେ ଦୌଡି ଦୌଡି ଥକି ଯିବାରୁ ତଳକୁ ଫେରିଆସିଲା ।

କୁକୁରଟି ବିଲେଇକୁ ଦ୍ୱିତୀୟଥର ପାଇଁ ସନ୍ଧିପତ୍ର ମାଗିଲା । କିନ୍ତୁ ବିଲେଇ ବିଚାରୀ କେଉଁଠୁ ବା ଆଣିବ ! କୁକୁରଟି ରାଗରେ ଗରଜି ବିଲେଇ ପଛେ ପଛେ ଦୌଡ଼ିଲା ।

# ଉପବାସ

ସକାଳର ସମୟ ଥିଲା । ଜଙ୍ଗଲର ଏକ ବଡ଼ ବରଗଛ ମୂଳରେ ଏକ ବାନରଦଳ ବସିଥିଲେ । ଆଶ୍ଚର୍ଯ୍ୟ ! ସବୁ ବାନର ଗଣ ଶାନ୍ତ ଭାବରେ ବସିଥିଲେ ।

ହଁ ! ସେଦିନ ବାନରମାନଙ୍କର ଉପବାସର ଦିନଥିଲା । ଉପବାସ ଆରମ୍ଭ ହେବାର ଥିଲା ।

ମୁଖିଆ ବାନର ଉଠିଲା । ସେ ଏକ ପରାମର୍ଶ ଦେଲା, ‘‘ସଂଧ୍ୟା ବେଳର ଖାଦ୍ୟ ଆମ୍ଭମାନଙ୍କୁ ଏବେଠାରୁ ତିଆରିକରି ରଖିବାକୁ ପଡ଼ିବ । ଯାହାଦ୍ୱାରା ଆମ୍ଭେମାନେ ଉପବାସ ସରିଲାପରେ ଖାଇପାରିବା ।’’ ସମସ୍ତେ ହଁ ମାରିଲେ ।



ପରବର୍ତ୍ତୀକ୍ଷଣରେ ସବୁ ବାନରମାନେ ପାଟି ଭିତରେ କଦଳୀକୁ ରଖିନେଲେ । ସମସ୍ତେ ବଡ଼ ହଇରାଣ ହୋଇ ଅନ୍ୟମାନଙ୍କୁ ଦେଖି ଛଟପଟ ହେଉଥିଲେ ।

ପୁଣି ଆଉ କ'ଣ ! ପଲକ ଝପକିବା ପରେ କଦଳୀ ଗଳା ଭିତରେ ଶୂନ୍ୟ ହୋଇଗଲା । ଆଉ ଉପବାସ ବି ବହୁତ ଖୁସିରେ ସମାପ୍ତ ହେଲା ।

- କର୍ଣ୍ଣାଟକର ଲୋକକଥା

हिन्दी से अनुवादः बिजय गोपाल ओझा




कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

ସାଙ୍ଗେ ସାଙ୍ଗେ ଯୁବକ ବାନରଗଣ ଦୌଡ଼ି ଦୌଡ଼ି ଗଲେ ଏବଂ ସ୍ୱାଦିଷ୍ଟ ବଡ଼ କଦଳୀ କାନ୍ଧି ନେଇକରି ଫେରି ଆସିଲେ ।

ମୁଖିଆ ବାନର ର ପତ୍ନୀ କହିଲେ, ''ଫଳ ସବୁ ଏବେ ଠାରୁ ବାଣ୍ଟି ନେବା କି ? ଉପବାସ ଶେଷ ହେବାପରେ ବାଣ୍ଟିବାରେ ସମୟ ନଷ୍ଟ ହେବ । ତା' ଛଡ଼ା ଆମ୍ଭମାନଙ୍କୁ ସଂଧ୍ୟାବେଳକୁ କେତେ ଜୋର୍‌ରେ ଭୋକ ବି ଲାଗିବ !''

ସବୁ ବାନର ମାନେ ରାଜି ହୋଇଗଲେ । ସମସ୍ତେ ନିଜ ନିଜ ଭାଗର କଦଳୀ ନେଇଗଲେ ଏବଂ ନିଜ ପାଖରେ ସୁରକ୍ଷିତ ଭାବରେ ରଖିଲେ ।

ଗୋଟିଏ ବଡ଼ ବାନର କହିଲା, ''ପରନ୍ତୁ ଗୋଟିଏ ଫଳ ଚୋପା ଛଡ଼ାଇ ରଖିବାକି ?''





''ହଁ ! ହଁ !'' ସଙ୍ଗେ ସଙ୍ଗେ ଗୋଟିଏ ମୋଟା ସୋଟା ବାନର ଜୋର କରି ହଁ ଭରିଲା । କେତେ ସମୟ ଧରି ଫଳକୁ ନ ଖାଇ ଦେଖୁଥିବା ? ଏ ତା' ପାଇଁ ମୁସ୍କିଲ କଥା ଥିଲା ।

ମୁଖିଆ ବାନର ନିର୍ଦ୍ଦେଶ ଦେଲା, ''ଠିକ୍ ଅଛି । ଫଳ ସବୁ ଚୋପା ଛଡ଼ାଇ ରଖିଦେବା । କିନ୍ତୁ ସଂଧ୍ୟା ପର୍ଯ୍ୟନ୍ତ କେହି ଖାଇବେ ନାହିଁ ।'' 'ବାଃ, ଏ ତ ବହୁତ ବଢିଆ ପରାମର୍ଶ !' ସବୁ ବାନର ମାନେ ନିଜ ନିଜର ଫଳକୁ ଚୋପା ଛଡ଼ାଇ ରଖିଦେଲେ ।

ସବୁଠାରୁ ଛୋଟ ବାନର ଟି ନିଜ ପିତାର କାନରେ ଫୁସ୍ ଫୁସ୍ କରି କହିଲା, ''ବାପା ! କଣ ମୁଁ କଦଳୀ କୁ ମୋ ପାଟିରେ ରଖିପାରିବି ? ମୁଁ ଶପଥ କରୁଛି କି ସଂଧ୍ୟା ପର୍ଯ୍ୟନ୍ତ ବିଲ୍‌କୁଲ୍ ଖାଇବି ନାହିଁ ।''

ପିତା ବାନର ସବୁ ବାନରଙ୍କୁ କହିଲା, ''କ'ଣ ଆମେସବୁ କଦଳୀ କୁ ପାଟି ଭିତରେ ରଖିବା ? ସଂଧ୍ୟାବେଳେ ଉପବାସର ସମାପ୍ତି ପରେ ଚୋବାଇ କରି ଖାଇବାରେ ସୁବିଧା ହେବ ।''

ଲୋକମାନେ ଦଶ, ପନ୍ଦର ସ୍ୱର୍ଣ୍ଣ ମୁଦ୍ରା ଦେବା ପାଇଁ ରାଜି ହୋଇଗଲେ । ଏହିପରି ଗଧର ଦାମ୍ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଶେଷରେ... ନସରୁଦ୍ଦିନ କହିବା ବେଳେ ଘର ଅଗଣାରେ ଗଧର ବୋବାଇବାର ଶବ୍ଦ ଶୁଭିଲା ।

ନସରୁଦ୍ଦିନ୍‌ର ପତ୍ନୀ ବହୁତ ଅଧୀର ହୋଇ କହିଲା, ‘‘ଶେଷରେ କ’ଣ ହେଲା ? ଶୀଘ୍ର କୁହନା ।’’

ନସରୁଦ୍ଦିନ ଗର୍ବରେ କହିଲା, ‘‘ମୁଁ ଭାବିଲି, ଏତେ ଅଦ୍ଭୁତ ଗଧକୁ ମୁଁ କାହିଁକି ବିକିବି ? ତେଣୁ ତିରିଶ ସ୍ୱର୍ଣ୍ଣମୁଦ୍ରା ଦେଇ କରି ତାକୁ ନିଜେ କିଣି ଘରକୁ ଫେରାଇ ଆଣିଲି ।’’

हिन्दी से अनुवाद: बिजय गोपाल ओझा





# ନିଲାମୀ

9



ନସରୁଦ୍ଦିନ ପାଖରେ ଗୋଟିଏ ଗଧ ଥିଲା । ଗଧଟି ଖାଇବାର ଧୁରନ୍ଧର ଥିଲା କିନ୍ତୁ ଏକ ନମ୍ବର କାମଚୋର ଥିଲା ।

ନସରୁଦ୍ଦିନ କୁ ସେ ଗଧ ବିଲ୍‌କୁଲ୍ ପସନ୍ଦ ନ ଥିଲା । ସେ ଭାବିଲା, ‘‘ଏ ଗଧକୁ ବିକିଦେଲେ ଭଲ ।’’



ଦିନେ ସକାଳେ ଗଧ କୁ ଚଲାଇ ଚଲାଇ ହାଟକୁ ନେଇଗଲା ।

ସଂଧ୍ୟାବେଳକୁ ଜୋର ଜୋର ରେ ହସି ହସି ଘରକୁ ଫେରି ପତ୍ନୀକୁ କହିଲା, ‘‘ମୁଁ ଆଜି କ’ଣ କଲି ଜାଣିଛ ? ସକାଳେ ମୁଁ ଯେବେ ହାଟକୁ ଗଲି ସେତେବେଳେ ଆମ ଗଧକୁ ନିଲାମ କରିବା ବାଲାକୁ ଦେଇଦେଲି । ତାକୁ କହିଲି କି ଭାଇ, ଏହାକୁ ଭଲ ଦାମରେ ବିକିଦେବୁ ।’’

ନିଲାମୀ ବାଲା ଗଧର ପ୍ରଶଂସାର ଝଡି ଲଗାଇଦେଲା । ସେ ଜୋର୍ ଜୋର୍ ରେ ନିଲାମ ଡାକିବାକୁ ଲାଗିଲା, ‘‘ହେ ଧନବାନ୍ ! ଦୟାବାନ୍ ! ଏତେ ବଢ଼ିଆ ଗଧ ଆଉ କେଉଁଠି କେବେବି ମିଳିବନି । ଆସନ୍ତୁ ! ଆସନ୍ତୁ ! ଦେଖନ୍ତୁ ।’’

‘‘ଗଧର ଲମ୍ବା କାନକୁ ଦେଖନ୍ତୁ । ତା’ର ମଜଭୁତ ଗୋଡ଼କୁ ଦେଖନ୍ତୁ । ଏହାର ସୁନ୍ଦର ଦାନ୍ତକୁ ଦେଖନ୍ତୁ । ଏ ଗଧ ଏବେ ଯୁବା ଅବସ୍ଥାରେ ଅଛି,’’ ଏହା କହି କରି ସେ ନିଲାମ ଡାକିବାରେ ଲାଗିଲା ।

ବାଶ୍ ! ଆଉକ’ଣ, ତା’ ପରେ ସବୁ ଲୋକମାନେ ଦାମ୍ ଲଗାଇବାରେ ଲାଗିଲେ । ଜଣେ କିଣିବା ବାଲା ତିନୋଟି ସ୍ୱର୍ଣ୍ଣମୁଦ୍ରା ଦାମ୍ ଲଗାଇଲା । ତଥାପି ନିଲାମୀବାଲା ଦାମ୍ ଲଗାଇବାରେ ହେଳା କଲାନି ।



# ପିମ୍ପୁଡ଼ି ଟି ଚପଲ ବନାଇଲା



ଗୋଟିଏ ଜଂଗଲରେ ପିମ୍ପୁଡ଼ିଟିଏ ରହୁଥିଲା । ସେ ଅନ୍ୟ ପିମ୍ପୁଡ଼ି ପରି ନଥିଲା । ସେ ସର୍ବଦା କିଛି ଆଶ୍ଚର୍ଯ୍ୟଜନକ କାମର ସନ୍ଧାନ ରେ ଏଠି ସେଠି ବୁଲୁଥିଲା ।

ଥରେ ସେ କିଛି ପତ୍ର ଏକାଠି କଲା । ରାତି ସାରା କାମ କରି ସେ ପତ୍ରରେ ଗୋଟିଏ ଯୋଡ଼ି ଚପଲ ବନାଇଲା । ସକାଳ ହେବାରୁ ତା'କୁ ବିକିବା ପାଇଁ ବାହାରିଲା ।

ରାସ୍ତାରେ ତାକୁ ଗୋଟିଏ ମାଙ୍କଡ଼ ମିଳିଲା । ପିମ୍ପୁଡ଼ି ମାଙ୍କଡ଼ କୁ କହିଲା, ''ମାଙ୍କଡ଼ ମାମୁଁ ! ଏ ଚପଲକୁ କିଣି ନିଅ !'' ମାଙ୍କଡ଼ ଉତ୍ତର ଦେଲା, ''ଆରେ ଭାଇ ! ମୋର ତ ଚାରି ଗୋଡ଼ । ଭଲା ମୁଁ ଏ ଦୁଇଟା ଚପଲ କିଣି କ'ଣ କରିବି ?''

ପିମ୍ପୁଡ଼ି ଘରକୁ ଫେରିଆସିଲା । ସାରା ରାତି ଜାଗି ଜାଗି ସେ ଆଉ ଏକ ଯୋଡ଼ି ଚପଲ ତିଆରି କଲା ।





ବୁଢ଼ିଆଣୀ ନାନୀ ତାକୁ କହିଲା, ''ତୋର ସମସ୍ୟାର ସମାଧାନ ପାଇଁ ମୁଁ ଏକ ଉପାୟ କହୁଛି ! ତୁ ତେନ୍ତୁଳିଆବିଛା ପାଖକୁ ଯାଆ । ତାର ଗୁଡ଼ାଏ ଗୋଡ଼ ଥାଏ । ସେ ପ୍ରତ୍ୟେକ ଦିନ ଦୁଇଟା-ଦୁଇଟା କରି ଚପଲ ନେବ । ସବୁଦିନ ପାଇଁ ତୁମର ଗ୍ରାହକ ହୋଇ ରହିଯିବ ।''

ଏ କଥା ଶୁଣି ପିମ୍ପୁଡ଼ିଟି ମନ ଖୁସିରେ ଘରକୁ ଫେରିଲା ।



हिन्दी से अनुवादः बिजय गोपाल ओझा



कथा झरना
चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust





ସକାଳ ହେବାରୁ ଚାରୋଟି ଚପଲକୁ ନେଇ ମାଙ୍କଡ଼ ମାମୁଁ ପାଖକୁ ଗଲା । ମାଙ୍କଡ଼ ଚପଲକୁ ହାତରେ ଧରି ବହୁତ ଭଲ ଭାବରେ ପରୀକ୍ଷା କଲା ।

''ଏ ଚପଲ ସବୁ ବହୁତ ଛୋଟ । ମୋ ଗୋଡ଼ ରେ କେମିତି ଠିକ୍ ହେବ ? ତୁମ ପରି ଛୋଟ ଛୋଟ ପିମ୍ପୁଡ଼ି ପାଇଁ ଏ ଠିକ୍ ରହିବ,'' ଏହା କହି ସେ ଚପଲକୁ କିଣିବାକୁ ମନାକରିଦେଲା ।

ଏବେ ସେ ଚପଲ ସବୁକୁ ନେଇ ନିଜର ଏକ ସାଙ୍ଗ ପାଖକୁ ଗଲା । ତା'ସାଙ୍ଗ ତାକୁ କହିଲା, ''ଚାରୋଟି ଚପଲ କିଣି କ'ଣ କରିବ ? କ'ଣ ତୋ'ର ମନେନାହିଁ ଆମ ସବୁ ପିମ୍ପୁଡ଼ିଙ୍କର ଛଅଟି ଗୋଡ଼ ଅଛି ?''

ନିରାଶ ହୋଇ ପିମ୍ପୁଡ଼ିଟି ଘରକୁ ଫେରିଲା । ସେ ଆଉ ଦୁଇଟି ଚପଲ ବନାଇଲା । ଆଗଦିନ ଛଅଟି ଚପଲକୁ ନେଇ ସେ ପୁଣି ନିଜର ସାଙ୍ଗ ପାଖକୁ ଗଲା ।





ତା' ସାଙ୍ଗ ସବୁ ଚପଲକୁ ପିନ୍ଧିକରି ଦେଖିଲା ଏବଂ କହିଲା, ''ଏ ସବୁ ବହୁତ ହାଲୁକା ଅଟେ । ଦୁଇଦିନରେ ସବୁ ଛିଡ଼ିଯିବ । ମୋର ଏ ସବୁ ଦରକାର ନାହିଁ । ଗୋଟିଏ କାମ କର । ସିଧା ଏହିଠାରୁ ବୁଢ଼ିଆଣୀ ପାଖକୁ ଚାଲିଯାଅ । ସେ ଚପଲକୁ କିଣିନେବ ।''



ପିମ୍ପୁଡ଼ିଟି ଏବେ ବହୁତ ଦୁଃଖୀ ହେଲା । ବୁଲି ବୁଲି କରି ବହୁତ ଥକି ବି ଯାଇଥିଲା । ତଥାପି ସେ ଛଅଟି ଚପଲ କୁ ଧରି ବୁଢ଼ିଆଣୀର ଘରକୁ ଗଲା ।

ବାହାରେ ଛିଡ଼ାହୋଇ ବୁଢ଼ିଆଣୀ କୁ ଡାକିଲା, ''ବୁଢ଼ିଆଣୀ ନାନୀ ! ବୁଢ଼ିଆଣୀ ନାନୀ !'' ଭିତରକୁ ଯିବି ତ ଜାଲ ଭିତରେ ଛନ୍ଦି ହୋଇଯିବି ।

ପିମ୍ପୁଡ଼ିକୁ ଦେଖି ବୁଢ଼ିଆଣୀ କହିଲା, ''ତୁ ଏମିତି ଥକା ଥକା କାହିଁକି ଲାଗୁଛୁ ?'' ପିମ୍ପୁଡ଼ିଟି ତାକୁ ସବୁ କଥା କହିଲା ।



“ଟିକି ଚଢ଼େଇଟି ପୁଣି ଉଡ଼ି ଭଣ୍ଡାର ଗୃହ ଭିତରକୁ ଗଲା । ପୁଣି ଆଉ ଗୋଟିଏ ଦାନାକୁ ନିଜ ଥଣ୍ଟରେ ରଖି ବାହାରକୁ ଆସିଲା ଏବଂ ତାକୁ ନିଜ ବସାରେ ରଖିଲା ।” କାହାଣୀକାର କାହାଣୀକୁ ଆଗେ ବଢ଼ାଇ କହିଲା ।

ରାଜା ପଚାରିଲେ, “ଫେର୍..।”

କାହାଣୀକାର ଟିକି ଚଢ଼େଇର ଭଣ୍ଡାର ଗୃହ ଭିତରକୁ ଯିବା ଆଉ ଧାନ ନେଇ ବାହାରକୁ ଆସିବା କଥା ବାରମ୍ବାର କହିବାକୁ ଲାଗିଲା ।

ରାଜା ଧୈର୍ଯ୍ୟହରା ହୋଇ ଭାବିଲେ, ‘ଟିକି ଚଢ଼େଇ ତ ଭଣ୍ଡାର ଗୃହରୁ ଏକ-ଏକ ଧାନ ବାହାର କରିବାରେ ଲାଗିବ, ମୋର ତ ପୂରା ଜୀବନ ଏମିତି ବିତିଯିବ । ତେବେ ବି ଭଣ୍ଡାର ଗୃହ ର ଧାନ ସରିବନି । ଏ କାହାଣୀକାରର କାହାଣୀ ଶୁଣି ଶୁଣି ମୁଁ ପାଗଳ ହୋଇଯିବି । ହେ ଭଗବାନ ! ଏ କାହାଣୀକାର ପାଖରୁ ମୋତେ କେମିତି ମୁକ୍ତି ମିଳିବ ?’



ରାଜା ତତ୍‌କ୍ଷଣାତ ଆଜ୍ଞା ଦେଲେ, “କାହାଣୀକାର କୁ ଏକ ହଜାର ସ୍ୱର୍ଣ୍ଣ ମୁଦ୍ରା ଦିଆଯାଉ ।” ତା’ ପରେ ହିଁ ରାଜା ଶାନ୍ତିରେ ନିଶ୍ୱାସ ନେଲେ ।

- ଭାରତର ଲୋକକଥା

हिन्दी से अनुवादः बिजय गोपाल ओझा




अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust


# କାହାଣୀ କେବେ ସରିବ



ପୁରୁଣା କାଳରେ ଏକ ରାଜା ଥିଲେ । ତାଙ୍କୁ କାହାଣୀ ଶୁଣିବାକୁ ବହୁତ ଭଲ ଲାଗେ । ଦିନେ ସେ ଘୋଷଣା କଲେ, “ମୋତେ ଯେଉଁ ଲୋକ ସବୁଠାରୁ ଲମ୍ବା କାହାଣୀ ଶୁଣାଇବ, ମୁଁ ତାକୁ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବି ।”

ଖବର ଶୁଣି କାହାଣୀ ଶୁଣାଇବାକୁ ବହୁତ ଲୋକ ଆସିଲେ । ଜଣେ ଲୋକ କାହାଣୀ ସାରିବାକୁ ଏକ ସପ୍ତାହ ଲଗାଇଲା । ଦ୍ୱିତୀୟ ଲୋକଟି ଦଶଦିନ ଧରି କାହାଣୀ ଶୁଣାଇଲା । ତୃତୀୟ ଜଣକ କାହାଣୀକୁ ଏକ ମାସ ଧରି ଶୁଣାଇଲା ।

ସେମାନଙ୍କ କାହାଣୀ ଶୁଣିଲା ପରେ ରାଜା ଏହି କଥା କୁହନ୍ତି, “ଆପଣମାନେ ଯେଉଁ କାହାଣୀ ମୋତେ ଶୁଣାଇଲେ ସେ କାହାଣୀ ଏତେ ଲମ୍ବା ନୁହେଁ ।” ତାଙ୍କୁ ପୁରସ୍କାର ନ ଦେଇ ଲେଉଟାଇ ଦେଉଥିଲେ ।

ଏକ ଚତୁର କାହାଣୀକାର ଏ ସବୁ କଥା ଶୁଣି କୌଣସି ପ୍ରକାରରେ ରାଜାଙ୍କ ଠାରୁ ପୁରସ୍କାର ପାଇବାପାଇଁ ନିଶ୍ଚିତ କଲା ।

ସେ ରାଜାଙ୍କ ପାଖକୁ ଗଲା ଏବଂ କହିଲା, “ମହାରାଜ, ମୋତେ ଏକ ବହୁତ ଲମ୍ବା କାହାଣୀ ଆସେ । ସେ କାହାଣୀକୁ ଶେଷ କରିବାକୁ ମୋର ଜୀବନ ବିତିଯିବ ।”



ରାଜା ଉତ୍ସାହରେ କହିଲେ, ''ଓହୋ, ଏମିତି କଥା ଯଦି ତେବେ କାହାଣୀ ଶୁଣାଅ !'' କାହାଣୀକାର କହିଲା, ''କିନ୍ତୁ ମୋର ଗୋଟିଏ ସର୍ତ୍ତ ଅଛି । କାହାଣୀ ଶୁଣିବା ସମୟରେ ଆପଣ 'ଫେର୍'... 'ଫେର୍'... ଏମିତି ପଚାରିବେ ।''

ରାଜା ଶୀଘ୍ର ହିଁ ସର୍ତ୍ତ ମାନିନେଲେ । କାହାଣୀକାର କାହାଣୀ ଶୁଣାଇବା ଆରମ୍ଭ କଲା ।

''ଗୋଟିଏ ଦେଶରେ ଥରେ ଖୁବ୍ ବର୍ଷା ହେଲା । ଫସଲ ବହୁତ ଭଲ ହେଲା । ଯେଉଁଠି ଦେଖ ସେଠି ପର୍ବତ ପରି ଧାନର ଗଦା ଥିଲା ।''

ଏହା ଦେଖି ସେ ଦେଶର ମନ୍ତ୍ରୀ ଆଦେଶ ଦେଲେ, ''ଏକ ବଡ଼ ଭଣ୍ଡାର ଗୃହର ନିର୍ମାଣ କରାଯାଉ । ସାରା ଦେଶର ଧାନକୁ ସେ ଭଣ୍ଡାର ଗୃହରେ ସୁରକ୍ଷିତ ରଖାଯାଉ । ଅକାଳ ବା ମରୁଡ଼ି ପଡ଼ିଲେ ବି ଚିନ୍ତା କରିବାକୁ ଦରକାର ପଡ଼ିବନି ।''

ଆଦେଶ ଅନୁସାରେ ଏକ ବଡ଼ ଭଣ୍ଡାର ଗୃହର ନିର୍ମାଣ କରାଗଲା । ଏ ପ୍ରକାରର ଭଣ୍ଡାର ଗୃହ କୌଣସି ଦେଶରେ ନ ଥିଲା । ସେ ସୁନ୍ଦର ଭଣ୍ଡାର ଗୃହକୁ ଦେଖିବା ପାଇଁ ବହୁତ ଦୂରରୁ ଲୋକମାନେ ଆସୁଥିଲେ ।

ଭଣ୍ଡାର ଗୃହରେ ବାୟୁ ଚଳାଚଳ ର ବ୍ୟବସ୍ଥା ପାଇଁ ଏକ ଛିଦ୍ର ରଖାଯାଇଥିଲା । ଦିନେ ଟିକି ଚଢ଼େଇଟିଏ ଭଣ୍ଡାର ଗୃହର ଚାରି ପାଖରେ ଉଡ଼ିବୁଲୁଥିଲା । ଭଣ୍ଡାର ଗୃହର ଛିଦ୍ର ତାକୁ ଦେଖାଗଲା । ସେ ଫୁର୍ର..ର୍ କରି ଉଡ଼ି ଭଣ୍ଡାର ଗୃହ ଭିତରେ ପ୍ରବେଶ କଲା ।

ଧାନର ଗୋଟିଏ ଦାନାକୁ ଥଣ୍ଟରେ ଧରି ବାହାରକୁ ଆସିଲା ଏବଂ ସେହି ଦାନାକୁ ନିଜ ବସାରେ ରଖିଦେଲା । କାହାଣୀକାର କାହାଣୀକୁ ଏ ପର୍ଯ୍ୟନ୍ତ ଶୁଣାଇ ଅଟକିଗଲେ । ରାଜା ପଚାରିଲେ ''ଫେର୍...।''



# ପାର କରିବି କି କରିବି ନାହିଁ



ଗୋଟିଏ ସବୁଜରଙ୍ଗର ପାହାଡ଼ ଥିଲା । ପାହାଡ଼ର ଉପର ଭାଗରେ ଗୋଟିଏ ଘୋଡ଼ୀ ତା' ଛୋଟ ପିଲା ସହ ରହୁଥିଲା । ସେ ପିଲାଟି ମା' ର ଚାରିପଟରେ ବୁଲୁଥିଲା । ଗୋଟେ କ୍ଷଣ ବି ମା'କୁ ଛାଡ଼ି କେଉଁଆଡ଼େ ଯାଉ ନ ଥିଲା ।

ଗୋଟିଏ ଦିନ ଘୋଡ଼ୀ ତା' ପିଲାକୁ କହିଲା, 'ପୁଅ ତୁ ପିଲାଙ୍କ ଭଳିଆ ପାଖ ଛାଡୁ ନାହୁଁ । ତୁ ବଡ଼ ହୋଇଗଲୁଣି । କାମ କରିବା କେବେ ଶିଖିବୁ ?'



ମା' ପଚାରିଲା, ''ତୁ ଏତେ ଶୀଘ୍ର କ'ଣ ଫେରିଆସିଲୁ ?'' ପିଲାଟି କହିଲା, ''ରାସ୍ତାରେ ଗୋଟିଏ ନଦୀ ଥିଲା । ମା' ! କ'ଣ ସେ ବହୁତ ଗଭୀର ?'' ଘୋଡ଼ୀ ପଚାରିଲା, ''କିଏ କହିଲା ତୁମକୁ ? ମୁଁ ସେ ରାସ୍ତାରେ ଦିନରେ କେତେ ଥର ଯିବା ଆସିବା କରେ ।''

ଛୋଟ ଘୋଡ଼ାଟି କହିଲା, ''ଶୁଣ ତ ମୋ କଥା ! ବଳଦ ଦାଦା କହିଲେକି ମୁଁ ନଦୀ ପାର କରି ପାରିବି । କିନ୍ତୁ ଗୁଣ୍ଡୁଚିମୂଷା ଭଉଣୀ କହିଲେ କି ମୁଁ ପାଣିରେ ବହିଯିବି । ମୁଁ କ'ଣ କରିବି ?''

ଘୋଡୀ ମନ୍ଦମନ୍ଦ ହସି କହିଲା, ''ବଳଦ ଦାଦା କେତେ ଲମ୍ବା ଏବଂ ଗୁଣ୍ଡୁଚିମୂଷା ଦୀଦୀ କେତେ ଲମ୍ବା ? ତୁ ତୋ'ର ତୁଳନା ଗୁଣ୍ଡୁଚିମୂଷା ସହ କରି ଦେଖ । ଭାବି ଦେଖ, କିଏ ଲମ୍ବା ଅଟେ ? ତୁ ନିଜେ ବୁଝିପାରିବୁ କି ନଦୀ ପାର କରିପାରିବୁକି ନାହିଁ ।''



''ହଁ ! ଏବେ ମୁଁ ବୁଝିପାରିଲି । ମୋ ପାଇଁ ନଦୀ ଗଭୀର ନୁହେଁ ।'' ଛୋଟ ଘୋଡାଟି ଖୁସିରେ ଡିଆଁ ମାରି ମାରି ନଦୀ ଆଡ଼କୁ ଚାଲିଗଲା ।

- ଚୀନ୍ ଦେଶର କାହାଣୀ

हिन्दी से अनुवादः बिजय गोपाल ओझा



कथा झरना

चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

ପିଲାଟି ଉତ୍ତର ଦେଲା, ‘‘କାମ ତ ଦିଅ ! ମୁଁ ପ୍ରସ୍ତୁତ ଅଛି ।’’

ଘୋଡ଼ୀ ଟି କହିଲା, ‘‘ଆଚ୍ଛା ! ଚାଲ, ତେବେ କାମ ଆରମ୍ଭ କର । ଏ ଶସ୍ୟ ଭରା ବସ୍ତାକୁ ମିଲ୍ ପର୍ଯ୍ୟନ୍ତ ନେଇ ଯା’ ।’’

ଛୋଟ ଘୋଡ଼ାଟି ଫୁର୍ତ୍ତିର ସହ କାମରେ ଲାଗିଗଲା । ବସ୍ତାକୁ ନିଜ ପିଠି ଉପରେ ଲଦି ନେଲା । ଖୁସି ଖୁସି ମିଲ୍ ଆଡ଼କୁ ଚାଲିବାକୁ ଲାଗିଲା ।

କିଛି ଦୂର ପର୍ଯ୍ୟନ୍ତ ଯାଇଛି କି ନାହିଁ ସେ ହଠାତ୍ ନ ଚାଲି ଛିଡ଼ାହେଇଗଲା । ‘ଆରେ ! ଏ’ତ ନଦୀ ଅଟେ । ପାଣି ବହି ଚାଲିଛି । ଏ ନଦୀ ପାର ହେବି ନା ହେବିନି ?’ ସେ ଦ୍ୱନ୍ଦ୍ୱ ରେ ପଡିଗଲା । ଏପଟ ସେପଟ ଦେଖିବାକୁ ଲାଗିଲା । ପାଖରେ ଗୋଟିଏ ବଳଦ ଘାସ ଚରୁଥିଲା । ଛୋଟ ଘୋଡାଟି ପଚାରିଲା, ‘‘ବଳଦ ଦାଦା ! କ’ଣ ମୁଁ ନଦୀ କୁ ପାର କରିନେବି ?’’



ବଳଦ ଟି କହିଲା, ‘‘ଆରେ, ଦେଖା ଯାଉ ନାହିଁକି ? ପାଣି ମୋର ଆଣ୍ଠୁ ତକ ବି ନାହିଁ । ତୁ କାହିଁକି ପାର କରିପାରିବୁନି ?’’

ଛୋଟ ଘୋଡ଼ା ର ସାହାସ ବଢ଼ିଗଲା । ସେ ନଦୀ ର ପାଣି ନିକଟକୁ ବଢ଼ିଲା । ‘‘ଆରେ ! ରହି ଯା’....ରହି ଯା’...! ତରବର ହୁଅନା,’’ କେଉଁଠୁ ଶୁଣାଗଲା ।

‘‘କିଏ ଅଛ ? ଘୋଡା ପିଲାଟି ଉପରକୁ ଦେଖିଲା । ଗଛ ଡାଳ ଉପରେ ଗୋଟିଏ ଗୁଣ୍ଡୁଚି ମୂଷା ବସି ଥିଲା । ସେ କହିଲା, ‘‘ସେ ବଳଦ ଉପରେ ବିଶ୍ୱାସ କର ନା । ନଦୀ ବହୁତ ଗଭୀର ଅଟେ । ତା’ ପାଣିର ସୁଅରେ କାଲି ମୋର ସାଙ୍ଗ ବହି ଯାଇଥିଲା ।’’

‘ନଦୀ ଗଭୀର କି ନୁହେଁ ?’ ଛୋଟ ଘୋଡ଼ାଟି କିଛି ବୁଝିପାରୁ ନ ଥିଲା । ‘‘କ’ଣ ମୁଁ ଫେରି ଯାଇ ମା’ଙ୍କୁ ପଚାରିବି ?’’ ଏହା ଭାବି ଛୋଟ ଘୋଡ଼ା ଫେରିଗଲା । ତା’ ମା’ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।



ହଠାତ୍ ଘର କୋଣରେ ରଖାହୁଆ ଟୋପି ହଲିବାରେ ଲାଗିଲା । ଦୁହେଁ ଡରିଗଲେ । ଅନ୍ୟ ବଖରାକୁ ଦୌଡ଼ି ପଳାଇଗଲେ । ଟୋପି ସେମାନଙ୍କ ପଛେ ପଛେ ଚାଲିଲା । ''ମାଁ ! ମାଁ ! ଏଠି ଆସି ଦେଖ । ଟୋପି ଆପେ ଆପେ ଚାଲୁଛି କେମିତି,'' କହି ଚିତ୍କାର କରିବାରେ ଲାଗିଲେ । ମା' ବି ଦୌଡ଼ିକରି ଆସିଲେ । ଟୋପିର ବାହାରେ ଧୂସରିଆ ରଙ୍ଗର ଲାଞ୍ଜ ଦେଖି ହସିଉଠିଲେ ।

''ଆରେ ! ଏତ ଆମରି ପୁସି । ତୁ ଏଇଠି ଲୁଚି ଅଛୁ ? ଆମେ ତୋତେ କେତେ ଖୋଜିଲୁଣି,'' କହି କରି ପିଲା ଦୁହେଁ ତାକୁ ଉଠାଇ ଗେଲ କରିବାରେ ଲାଗିଲେ ।

- ରୂସ ଦେଶର ଲୋକକଥା



हिन्दी से अनुवादः बिजय गोपाल ओझा


कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ଆମରି ଛୋଟ ବିଲେଇ





ରିୟା ଆଉ ଇବାନ୍ ଗୋଟିଏ ବିଲେଇକୁ ପାଳିଥିଲେ । ଦିନେ ସେ କେଉଁଠି ହଜିଗଲା । ବହୁତ ଖୋଜିଲା ପରେ ବି ମିଳିଲାନି । ତିନିଦିନ ବିତିଗଲା । ଚତୁର୍ଥ ଦିନ....

'ମ୍ୟାଉଁ...ମ୍ୟାଉଁ...ମ୍ୟାଉଁ...ମ୍ୟାଉଁ''

''ଏ ଶବ୍ଦ କେଉଁଠୁ ଆସୁଛି ?'' କହି ରିୟା ଶିଢ଼ି ଚଢ଼ି କରି ଦେଖିଲା ।

''ଆମ ବିଲେଇଟା ଛାତ ଉପରେ ଅଛି ଇବାନ୍ । ତା' ପାଖରେ ଛୋଟ ଛୋଟ ବିଲେଇ ଛୁଆବି ଅଛନ୍ତି । ଶୀଘ୍ର ଆସିକରି ଦେଖ୍ !'' ରିୟା ଖୁବ୍ ଜୋର୍‌ରେ ଚିତ୍କାର କରି କହିଲା ।



ଈବାନ୍‌ବି ଉପରେ ଚଢ଼ି କରି ଦେଖିଲା । ବିଲେଇ ଗୋଟିଏ ଟୋକେଇ ରେ ଶୋଇଥିଲା । ଆଉ ତା ପାଖରେ ଲାଗିକରି ପାଞ୍ଚୋଟି ବିଲେଇ ଛୁଆ ବି ଶୋଇଥିଲେ ।

ରିୟା ଆଉ ଈବାନ୍ ତାଙ୍କ ବିଲେଇ ପାଇଁ ବହୁତ ଖୁସି ଆଉ ଗର୍ବ ଅନୁଭବ କରୁଥିଲେ । ଯିଏ ବି ଘରକୁ ଆସୁଥିଲେ ସେମାନଙ୍କୁ ଦୁହେଁ ବିଲେଇଛୁଆକୁ ଦେଖାଇକରି ବହୁତ ଖୁସି ଅନୁଭବ କରୁଥିଲେ ।

ବିଲେଇଛୁଆମାନେ ବଡ଼ ହେବାକୁ ଲାଗିଲେ । ଏଠାରୁ ସେଠାକୁ ସେମାନେ ଦୌଡ଼ିବାକୁ ଲାଗିଲେ । ଜଣେ ଅନ୍ୟଜଣକ ଉପରେ ଚଢ଼ିକରି ଲଢ଼ାଇକରିବାକୁ ଲାଗିଲେ । ଆଉ କେବେ-କେବେ ଶୋଇ ଶୋଇ ଖେଳିଲେ, ମାଠିଆ ଆଉ ବାସନ ଭିତରେ ପଶି ତାକୁ ସବୁ ଗଡ଼ାଇବାରେ ଲାଗିଲେ ।

ରିୟା ଆଉ ଈବାନ୍ ଧୂସର ରଙ୍ଗର ବିଲେଇଛୁଆଟିକୁ ନିଜ ପାଖରେ ରଖିଲେ । ତାକୁ ପୁଣି କହି କରି ଡାକିବାରେ ଲାଗିଲେ । ଅନ୍ୟ ଚାରୋଟି ବିଲେଇଛୁଆ କୁ ନିଜ ନିଜର ସାଙ୍ଗମାନଙ୍କୁ ଦେଇଦେଲେ । ପୁସିକୁ ସେମାନେ ଖାଇବାକୁ ଦିଅନ୍ତି ଆଉ ତା ସାଥିରେ ଖେଳିଲାବେଳେ ସମୟ ବି ଜାଣିପାରନ୍ତିନି । ପୁସିକୁ ସେମାନେ ନିଜ ସାଥିରେ ଶୋଇପକାନ୍ତି ।

ଦିନେ ରିୟା ଆଉ ଈବାନ୍ ପୁସିକୁ ସାଥିରେ ବାହାରକୁ ନେଇଗଲେ । ପାଖରେ ଶୁଖା ହୁଆ ଘାସର ଗଦା ଥିଲା । ପବନରେ ଘାସ ସବୁ ହଲୁଥିଲେ । ପୁସି ତାକୁ ଧରିବାକୁ କୁଦା କୁଦି କରିବାକୁ ଲାଗିଲା । ତାର ଡେଇଁବା, କୁଦିବା ଖେଳ ଦେଖିକରି ସବୁପିଲାମାନେ ହସିବାକୁ ଲାଗିଲେ । କିଛି କ୍ଷଣ ପରେ ପିଲାମାନେ ଖେଳରେ ମଗ୍ନ ହୋଇଗଲେ ଏବଂ ପୁସିକୁ ଭୁଲିଗଲେ ।

ଅନ୍ଧାର ହୋଇଗଲା । ଯେତେବେଳେ ପିଲାମାନେ ଘରକୁ ଫେରିବାର ବେଳହେଲା, ସେମାନେ ପୁସିକୁ ଡାକିଲେ । ହେଲେ ପୁସିର ଖୋଜ ଖବର ମିଳିଲାନି । ଦୁହେଁ କାନ୍ଦି କାନ୍ଦି ଘରେ ପହଞ୍ଚିଲେ ।

ରାତିରେ ଦୁହେଁ ହାତରେ ବହି ଧରି ପଢିବାକୁ ଚେଷ୍ଟା କରୁଥିଲେ । ହେଲେ ସେମାନଙ୍କର ମନ ତ ଆଉ କେଉଁଠି ଥିଲା । ‘‘ବେଚାରୀ ! ପୁସିକୁ ଦୁଧ କିଏ ଦେବ ? ଏତେ ଥଣ୍ଡାରେ ସେ କେଉଁଠି ଶୋଇବ ?’’ ଦୁଇଜଣ ମିଶି ଏହି ବିଷୟରେ କଥାବାର୍ତ୍ତା ହେଲେ ।



‘କେହି ଆସୁଛନ୍ତି । ଚୋରି ଜିନିଷତକ ଲୁଚାଇରଖିବାକୁ ପଡ଼ିବ,’ ଏହା ଭାବି ଚୋରଟି ଗାଡ଼ ଖୋଳିବା ଆରମ୍ଭ କଲା । ଏବେ କବନ୍ନମ ଗାଇବାକୁ ଲାଗିଲା -

‘‘ଏମିତି କି ପାଇଁ ଗାଡ଼ ଖୋଳୁଛି
କ’ଣ ବା ସେଥିରେ ଛୁପି ରହିଛି ।’’

ଚୋର ହଇରାଣ ରେ ପଡ଼ିଗଲା । ସବୁ କିଛି ସେଇଠି ଫୋପାଡ଼ି ଦଉଡ଼ି ପଳାଇଲା ।

ସଂଗେ ସଂଗେ କବନ୍ନମ ‘ଚୋର-ଚୋର’ କହି ଚିତ୍କାର କଲା । ଆଖ-ପାଖରୁ ଲୋକମାନେ ଦୌଡ଼ିଆସିଲେ ଏବଂ ଚୋରକୁ ଧରି ନେଲେ । ଲୋକମାନେ କବନ୍ନମର ଖୁବ୍ ପ୍ରଂଶସା କଲେ । ସେହି ଦିନ ଠାରୁ ସେମାନେ ସବୁ କବି କବନ୍ନମ ଙ୍କ ଗୀତର ଆନନ୍ଦ ନେବାକୁ ଲାଗିଲେ ।

- ତାମିଲନାଡୁ ର କାହାଣୀ

हिन्दी से अनुवादः बिजय गोपाल ओझा




कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# କବି କବନ୍ନମ



କବନ୍ନମ ସର୍ବଦା ସ୍ୱପ୍ନ ଦୁନିଆଁରେ ବୁଡ଼ିରହିଥାଏ । ଘଣ୍ଟା ଘଣ୍ଟା ଝରକା ପାଖରେ ବସି ବାହାରକୁ ଦେଖୁଥାଏ । କେହି ଯଦି ପଚାରେ ସେ କ’ଣ କରୁଛି, ତେବେ ସେ କହେ ‘‘ମୁଁ ଗୀତର ସ୍ୱର ରଚନା କରୁଛି ।’’

‘‘ମୁନ୍ନା ର ଇଚ୍ଛା ଥିଲା
ତେଣୁ ସେ ଆଖୁ ଖାଇଲା’’

‘‘ଉଡ଼େ ଗଛର ପତ୍ର ଫଡ଼-ଫଡ଼-ଫଡ଼
ଦେଖ, ବିଜୁଳି ଚମକେ କଡ଼-କଡ଼-କଡ଼’’

ଏହିଭଳି ସେ ଶବ୍ଦକୁ ଯୋଡ଼ି, ଖଞ୍ଜି କରି କବିତା ଲେଖେ । ତା’ର ସାଙ୍ଗମାନେ ତାକୁ ପରିହାସ କରନ୍ତି, ‘‘ଆରେ ଦେଖ ! କବି କବନ୍ନମ ଆସୁଅଛନ୍ତି ।’’



ଦିନେ ସେ ଆଈ ଙ୍କ ଗାଆଁ ଯାଉଥିଲା । ରାସ୍ତା ସାରା ଗଛ ଲତା ଏବଂ ପକ୍ଷୀ ଦେଖିବାକୁ ମିଳିଥିଲା । ସେମାନେ ବହୁତ ସୁନ୍ଦର ଥିଲେ । ସେହି ସୁନ୍ଦର ଦୃଶ୍ୟର ଆନନ୍ଦ ନେଇ ସେ ନିଜ ଧୁନରେ ଚାଲିଯାଉଥିଲା ।

ପକେଟରେ ଥିବା ଚଣାକୁ ଚବାଇ ଚବାଇ ସେ ଚାରିଆଡ଼କୁ ନଜର ପକାଉଥିଲା । ସମ୍ମୁଖରେ ଗୋଟିଏ ତାଳ ଗଛ ଦେଖା ଗଲା । ସଙ୍ଗେ ସଙ୍ଗେ ସେ ଗାଇବାରେ ଲାଗିଲା ।

''ଲମ୍ୱା ଲମ୍ୱା ଅଟେ ଦୁଇଟି ପାଦ
ହୋଇଅଛି ଛଡ଼ା ଯେମିତି ଖମ୍ବ ।''

ଅଳ୍ପ ଦୂର ଆଗକୁ ଚାଲିଲା । ତାକୁ ଗୋଟିଏ ପେଚା ଦେଖାଗଲା । ସେ ଗାଇବାକୁ ଲାଗିଲା :

''ପେଚା ଆଖି ବୁଲାଉଛି ଦେଖ କେମିତି
ସବୁ କିଛି ତାକୁ ଦେଖାଯାଏ ଯେମିତି ।''



କବନ୍ନମ ଉତ୍ସାହିତ ହୋଇ ଜୋର୍ ଜୋର୍ ରେ ଗାଇ ଗାଇ ଆଗକୁ ବଢ଼ିଲା ।

କିଛି ଦୂରରେ ଗୋଟିଏ କୁକୁର ମାଟି ରାମ୍ପୁଡୁ ଥିଲା । କବନ୍ନମ କୁ ସେ ଶିଆଳ ଭଳି ଦିଶିଲା । ସଂଗେ ସଂଗେ ସେ ଗାଇବାକୁ ଲାଗିଲା -

''ଏମିତି କି ପାଇଁ ଗାଡ଼ ଖୋଳୁଅଛି
କ'ଣ ବା ସେଥିରେ ଛୁପିରହିଛି ।''

ବାଃ ! ବହୁତ ବଢ଼ିଆ ! ତା'ର ଖୁସିର ଠିକଣା ନ ଥିଲା ।



''ଲମ୍ୱା-ଲମ୍ୱା ଅଟେ ଦୁଇଟି ପାଦ
ହୋଇଅଛି ଛିଡ଼ା ଯେମିତି ଖମ୍ବ ।''

''ପେଚା ଆଖି ବୁଲାଉଛି ଦେଖ କେମିତି
ସବୁ କିଛି ତାକୁ ଦେଖାଯାଏ ଯେମିତି ।''

''ଏମିତି କି' ପାଇଁ ଗାଡ଼ ଖୋଳୁଛି,
କ'ଣ ବା ସେଥିରେ ଛୁପି ରହିଛି ।''

ଗାଇ ଗାଇ ସେ ଆଈ ଘରେ ପହଞ୍ଚିଲା । ସେତେବେଳକୁ ଅନ୍ଧାର ହୋଇଯାଇଥିଲା । 'ଆରେ ! ଏ କ'ଣ ? ଆଈଙ୍କ ଘରେ ତ ତାଲା ଲାଗିଛି !' ସେ ନିରାଶ ହେଲା । ପାଖରେ ଗୋଟିଏ ଜୀର୍ଣ୍ଣ ଘର ଥିଲା । ତା'ର ଚଉଁରା ଉପରେ ସେ ଶୋଇଗଲା ।

ଅଧ ରାତିରେ ତାକୁ କିଛି ଶବ୍ଦ ଶୁଣାଗଲା । ସେ ଚମକି ଉଠିଲା । ସେ ଝରକା ଦେଇ ଝାଁକି ଦେଖିଲା । ତାକୁ ଦୁଇଟି ଲମ୍ୱା ଗୋଡ଼ ଦୃଶ୍ୟ ହେଲା । ଅଧା ନିଦରେ ତାକୁ  ତାଳ ଗଛ ଭଳି ଲାଗିଲା । ସେ ଏମିତି ଗାଇବାକୁ ଲାଗିଲା -

''ଲମ୍ୱା ଲମ୍ୱା ଅଟେ ଦୁଇଟି ପାଦ
ହୋଇଅଛି ଛିଡା ଯେମିତି ଖମ୍ବ ।''

ଗୀତ ଶୁଣି ଭିତରେ ଛିଡ଼ା ହୋଇଥିବା ଚୋର ଡରି ଚାରିଆଡ଼କୁ ଦୃଷ୍ଟି ପକାଇଲା । ଏହା ଦେଖି କବନ୍ନମ ଗାଇବାକୁ ଲାଗିଲା -

''ପେଚା ଆଖି ବୁଲାଉଛି ଦେଖ କେମିତି
ସବୁ କିଛି ତାକୁ ଦେଖାଯାଏ ଯେମିତି ।''

ସବୁ ପଶୁମାନେ ଉପରୁ ଦେଖୁଥିଲେ । ସେଠାରେ ପିମ୍ପୁଡ଼ି ବି ଥିଲା । ''ବିଚରା ହାତୀ ! ହାରିଗଲା । ଏବେ ତୁମେ ବାହାରକୁ କେମିତି ଆସିବ ? ମୁଁ ତ ତୁମକୁ ବାହାରକୁ ଆଣିବା ବାଲା ନୁହଁ,'' ପିମ୍ପୁଡ଼ି ହସିକରି ଚାଲିଗଲା ।

ଅନ୍ୟପଶୁମାନଙ୍କ ହାତୀ ଉପରେ ଦୟା ଆସିଲା । ସେମାନେ ବାହାରକୁ ଆସିବାରେ ହାତୀକୁ ସାହାଯ୍ୟ କଲେ । ହାତୀ ବି ପଶୁମାନଙ୍କୁ ଆଉ ହଇରାଣ ନ କରିବାକୁ କଥା ଦେଲା ।

ଚାଲୁ ଚାଲୁ ହାତୀ ମାଙ୍କଡକୁ ପଚାରିଲା, ''କହିଲ, ପିମ୍ପୁଡ଼ି କେମିତି ଜିତିଗଲା ?''

ମାଙ୍କଡ କହିଲା, ''ମୂର୍ଖ ହାତୀ ! ପିମ୍ପୁଡ଼ି ତ ସବୁ ଜାଗାରେ ରୁହନ୍ତି । ପ୍ରତ୍ୟେକ ଥର ତୁମେ ଅଲଗା ଅଲଗା ପିମ୍ପୁଡ଼ି କୁ ଦେଖିଛ । ଯେଉଁ ପିମ୍ପୁଡ଼ି ତୁମକୁ ଆହ୍ୱାନ କରିଥିଲା ସେ ତୁମ ସାଥିରେ ଚାଲୁ ନ ଥିଲା !''



हिन्दी से अनुवादः बिजय गोपाल ओझा



कथा झरना
चित्रांकनः उमा कृष्णास्वामी


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust


# ଦୌଡ଼ ପ୍ରତିଯୋଗିତା



ଗ୍ରୀଷ୍ମ ରତୁ ଥିଲା । ହାତୀ ମହାରାଜ ପୋଖରୀରେ ଖୁବ୍ ଗାଧୋଇଲେ । ଯେବେ ସେ ଘରକୁ ଫେରୁଥିଲେ ରାସ୍ତାରେ ଶହ ଶହ ପିମ୍ପୁଡ଼ି ଦେଖିଲେ । ତାଙ୍କୁ



''କ୍ଷମାକରନ୍ତୁ ମହାରାଜ ! ଆମେସବୁ କାମରେ ବ୍ୟସ୍ତ ଥିଲୁ ।'' ଛୋଟ ପିମ୍ପୁଡିଟିଏ ଉତ୍ତରଦେଲା, ଆମେ ଆପଣଙ୍କୁ ଦେଖିପାରିଲୁନି । ''କାମ ! ତୁଚ୍ଛ ପ୍ରାଣୀ ! ତୁମେ କି କାମ କରିପାରିବ ?'' ହାତୀ ପଚାରିଲା ।

''ଆମେ ଛୋଟ ନିଶ୍ଚୟ, କିନ୍ତୁ ତୁଚ୍ଛ ନୁହେଁ,'' ଏକ ନିର୍ଭୀକ ପିମ୍ପୁଡି ଆଗେଇଆସି ଜବାବ ଦେଲା । ହାତୀର କ୍ରୋଧ ଆହୁରି ବଢ଼ିଗଲା, ''ଏତେ ସାହସ ! ତୁମେ ସବୁ ଛୋଟ ଏବଂ ବେକାର ମଧ୍ୟ । ମୋତେ ଦେଖ ! ମୁଁ କେତେ ବଳବାନ୍‌ଅଟେ ।''



ପିମ୍ପୁଡ଼ି କାହିଁକି ବା ଚୁପ୍ ରହିବ, ''ଆମେ ଆପଣଙ୍କ ଠାରୁ କେଉଁଥିରେ କମ୍ ନୁହେଁ । ଆପଣ ଯେଉଁ ଯେଉଁ କାମ କରିପାରିବେ, ଆମେ ବି ସେ କାମ ସବୁ କରିପାରିବୁ ।''



ହାତୀ ଆହୁରି ଦମ୍ଭରେ ପିମ୍ପୁଡ଼ିକୁ ଦେଖିଲା । ସେ ତାର ପାଦର ଆଙ୍ଗୁଳିର ବାଳ ଠାରୁ ବି ଛୋଟ ଥିଲା । ''କ'ଣ ତୁମେ ମୋ ସହିତ ଦୌଡ଼ ପ୍ରତିଯୋଗିତା ରେ ଭାଗ ନେଇପାରିବ ?'' ହାତୀ ସେମାନଙ୍କୁ ଆହ୍ୱାନ କଲା ।

''କାହିଁକି ନୁହେଁ ? ଦୌଡ଼ରେ ମୁଁ ତୁମ୍ଭଙ୍କୁ ହରାଇ ପାରିବି,'' ପିମ୍ପୁଡ଼ି ଆତ୍ମବିଶ୍ୱାସ ଭରା ସ୍ୱରରେ କହିଲା । ହାତୀ ରାଗରେ ଗର୍ଜିଲା, ''ମୂର୍ଖ ! ମୋର ଏକ ପାଦ ଜାଗାକୁ ପାରିକରିବାକୁ ତୁମକୁ ଗୋଟିଏ ଯୁଗ ଲାଗିବ । ଚାଲ ! ମୁଁ ତୁମ୍ଭକୁ ଉଚିତ୍ ଶିକ୍ଷା ଦେବି ।''

ପ୍ରତିଯୋଗିତା ଆରମ୍ଭହେଲା । ହାତୀ ଅଳ୍ପ ଦୂର ଦୌଡ଼ିବା ପରେ ତଳକୁ ଚାହିଁଲା । ''ଆରେ ପିମ୍ପୁଡ଼ି ! ତୁ ଏ ପର୍ଯ୍ୟନ୍ତ ଦୌଡ଼ୁଛୁ !'' ହାତୀ ଆଶ୍ଚର୍ଯ୍ୟ ହୋଇ କହିଲା ।

ହାତୀ କିଛିଦୂର ପୁଣି ଦୌଡିଲା, ପିମ୍ପୁଡ଼ି ଏବେ ବି ତାର ପାଖାପାଖି ଦୌଡୁଥିଲା । ହାତୀ ଆହୁରି ଜୋର୍ ରେ ଦୌଡ଼ି ବାକୁ ଲାଗିଲା । କେତେ ପାହାଡ ଏବଂ ପଥୁରିଆ ରାସ୍ତା ପାର କଲା । ଯେବେ ଯେବେ ସେ ତଳକୁ ଚାହିଁଲା ସେତେବେଳେ ତା ସାଥିରେ ଦୌଡୁଥିବା ପିମ୍ପୁଡ଼ିକୁ ଦେଖିଲା ।

ହାତୀ ଏବେ ଥକିବାରେ ଲାଗିଲା । ତା'ର ଶ୍ୱାସ ଫୁଲିବାରେ ଲାଗିଲା । ସେ ଏବେ ଦୌଡ଼ ସମାପ୍ତ କରିବାକୁ ଚାହୁଁଥିଲା । ପିମ୍ପୁଡ଼ିଟି କିନ୍ତୁ ସାଥିରେ ଚାଲୁଥିଲା । 'ମୁଁ କେମିତି ହାରମାନିବି !' ଏହା ଭାବି ହାତୀ ପୁଣି ଦୌଡ଼ିବାରେ ଲାଗିଲା ।

ଶବ୍ଦ ଶୁଣି ସବୁ ପଶୁ ବାହାରକୁ ଆସିଲେ । ଏ ତମାସା ଦେଖିବାକୁ ଲାଗିଲେ । ''ସାବାସ୍ ପିମ୍ପୁଡ଼ି, ଆହୁରି ଜୋର୍‌ରେ ଦୌଡ଼ !'' ସମସ୍ତେ ତାକୁ ପ୍ରୋତ୍ସାହିତ କଲେ ।

କୋଳାହଳ ଶୁଣି ହାତୀ ଆହୁରି କ୍ରୋଧିତ ହେଲା । ଦ୍ରୁତ ବେଗରେ ଦୌଡ଼ିବାକୁ ଲାଗିଲା ଏବଂ ଯାଇ ଖାଲ ରେ ପଡ଼ିଗଲା ।



ତତ୍‌କ୍ଷଣାତ୍ ଶିଷ୍ୟଗଣ ସୂଚି କୁ ବାହାର କରି ଦେଖିବାକୁ ଲାଗିଲେ । ପୁଣି କହିଲେ, ''ଗୁରୁଜୀ ଏ ତାଲିକାରେ ଆପଣଙ୍କର ତ ନାମ ନାହିଁ ! ତେଣୁ ଆମ୍ଭେମାନେ ଆପଣଙ୍କୁ ବାହାର କୁ ଆଣିବୁନି ।''

ଗୁରୁ ସେମାନଙ୍କୁ ବହୁତ ପ୍ରକାରେ ବୁଝାଇବାକୁ ଲାଗିଲେ । କିନ୍ତୁ ଶିଷ୍ୟଗଣ ଜିଦ୍‌ରେ ଅଟଳ ରହିଲେ, ''ଆମ୍ଭେମାନେ ଆପଣଙ୍କର ଆଜ୍ଞା ଉଲଘଂନ କେବେ କରିବୁନି । ଚାହିଁଲେ ଆପଣ ଆମର ପରୀକ୍ଷା ନେଇପାରନ୍ତି । ଏହାକହି ଶିଷ୍ୟମାନେ ତାଙ୍କୁ ଗାଡ଼ ରୁ ବାହାରକୁ ଆଣିବାକୁ ମନା କରିଦେଲେ ।''

ଗୁରୁ ବିବଶ ହୋଇ ସେମାନଙ୍କୁ ସୂଚି ଆଉ କଲମ ମାଗିଲେ । ତଳେ ପଡ଼ିଯାଉଥିବା ଜିନିଷ ପତ୍ରର ସୂଚିରେ ନିଜରନାମକୁ ଯୋଡ଼ିଦେଲେ ଯାହାକୁ ଶିଷ୍ୟମାନଙ୍କୁ ଉଠାଇବାର ଥିଲା । ପୁଣି ସେହି ସୂଚିକୁ ଶିଷ୍ୟମାନଙ୍କ ପାଖକୁ ଫୋପାଡ଼ି ଦେଲେ । ତେବେଯାଇଁ ଶିଷ୍ୟମାନେ ମିଳି ଗୁରୁଙ୍କୁ ଗାଡ଼ ରୁ ବାହାରକୁ ଆଣିଲେ ।

- ଭାରତର ଲୋକକଥା

हिन्दी से अनुवादः बिजय गोपाल ओझा





# ଆଜ୍ଞାକାରୀ ଶିଷ୍ୟ



ଗୁରୁ ନିଜର ଚାରିଜଣ ଶିଷ୍ୟ ଙ୍କ ସାଥିରେ ବଳଦଗାଡ଼ିରେ ଯାତ୍ରା କରୁଥିଲେ । ଖୁବ୍ ଥଣ୍ଡା ଥଣ୍ଡା ପବନ ବହୁଥିଲା । ଗୁରୁ ଆରାମରେ ଶୋଇ ପଡ଼ିଲେ ।

ରାସ୍ତା ବହୁତ ଉବଡ଼ ଖାବଡ଼ ଥିଲା ଆଉ ଗାଡ଼ି ହଲୁଥିଲା । ହଠାତ୍ ଗୁରୁଙ୍କର ପଗଡ଼ି ତଳେ ପଡ଼ିଗଲା ।

ଶିଷ୍ୟମାନେ ପଗଡ଼ିକୁ ତଳେ ପଡ଼ିବାର ଦେଖିଲେ । ହେଲେ କିଛି ବୁଝିପାରିଲେନି ସେମାନେ କଣ କରିବେ, କାହିଁକି ନା ଗୁରୁଙ୍କର ଆଜ୍ଞାଥିଲା, ''ସେମାନେ ଗୁରୁଙ୍କର ଅନୁମତି ବିନା କୌଣସି କାମ କରିପାରିବେନି ।'' ତେବେ ସେମାନେ ଏ ପଗଡ଼ି କୁ କେମିତି ଉଠାଇବେ ?



କିଛିକ୍ଷଣପରେ ଗୁରୁ ନିଦରୁ ଜାଗିଉଠିଲେ । ଶିଷ୍ୟମାନଙ୍କୁ ପଚାରିଲେ, ‘‘ମୋ ପଗଡ଼ି କାହିଁ ?’’ ଶିଷ୍ୟମାନେ ଗୁରୁଙ୍କୁ କହିଲେ, ‘‘ପଗଡ଼ି ତ ରାସ୍ତାରେ ପଡ଼ିଗଲା ।’’

ଗୁରୁ ସେମାନଙ୍କୁ ରାଗରେ କହିଲେ, ‘‘ଆରେ ମୂର୍ଖଗଣ ! ପଗଡ଼ିକୁ ରାସ୍ତାରେ ପଡ଼ିବାର ଦେଖି ବି ତୁମ୍ଭେମାନେ ଉଠାଇଲ ନାହିଁ ! ଏବେ ଗାଡ଼ିରୁ ଯେଉଁ ଜିନିଷ ପତ୍ର ପଡ଼ିଯିବ ତାକୁ ନିଶ୍ଚିତ ଭାବରେ ଉଠାଇନେବ ।’’

ଗୁରୁ ପୁଣି ନିଦ ରେ ଶୋଇଗଲେ । ଏ ଥର ସବୁ ଶିଷ୍ୟମାନେ ସତର୍କ ଥିଲେ ଓ ଚାରିପଟେ ଦେଖିବାରେ ଲାଗିଲେ । ଆରେ ! ଏ କ’ଣ ? ଚାଲୁ ଚାଲୁ ବଳଦର ଗୋବର ପଡିବାରେ ଲାଗିଲା । ଏ ଥର ସବୁ ଶିଷ୍ୟମାନେ କାମରେ ଲାଗିଗଲେ । ସାରା ଗୋବର ଏକାଠି କରି ଗାଡ଼ିରେ ରଖିଦେଲେ ।

‘‘ଗାଡ଼ିରୁ ଏକ ଅଜବ ପ୍ରକାରର ଦୁର୍ଗନ୍ଧ ଆସୁଛି !’’ କହି ଗୁରୁଜୀ ଆଖି ଖୋଲିଲେ । ଗୋବର ଗଦା ! ଗୁରୁ ଚିହିଁକି ଉଠିଲେ, ‘‘ଏ କି ପ୍ରକାରର ଥଟ୍ଟା ମଜା ?’’

‘‘ଗୁରୁଜୀ ! ଆପଣ ତ କହିଥିଲେ ଗାଡ଼ିରୁ ପଡୁଥିବା ସବୁ ଜିନିଷପତ୍ର ଉଠାଇ କରି ରଖିବ । ତେଣୁ ଆମ୍ଭେମାନେ ଏହିସବୁ କଲୁ,’’ ଶିଷ୍ୟମାନେ ଗର୍ବରେ କହି ଉଠିଲେ ।

‘‘ଏ ଶିଷ୍ୟଙ୍କୁ ମୁଁ କେମିତି ବୁଝାଇବି ?’’ ନିଜ ମୁଣ୍ଡରେ ହାତ ଦେଇ କହିଲେ । ପୁଣି କିଛି ଭାବି ଏକ ସିଦ୍ଧାନ୍ତରେ ପହଞ୍ଚିଲେ ।

ଗାଡ଼ିରୁ ପଡ଼ିଯାଉଥିବା କେଉଁ ଜିନିଷ ପତ୍ର ଉଠାଇବେ ଆଉ କେଉଁ ଜିନିଷପତ୍ର ଉଠାଇବେନାହିଁ, ଏହାର ଏକ ସୂଚି ତିଆରି କରି ଶିଷ୍ୟମାନଙ୍କୁ ଦେଲେ । ତା’ ପରେ ନିଶ୍ଚିତ ହୋଇ ପୁଣି ଶୋଇଗଲେ ।

ଗାଡି ପୁଣି ପଥୁରିଆ ରାସ୍ତାରେ ଚାଲିଲା । ହଠାତ୍ ଗାଡ଼ିର ସନ୍ତୁଳନ ବିଗଡ଼ିଗଲା । ଧମ୍ କରି ଗୁରୁଜୀ ଏକ ଗାଡ଼ରେ ପଡିଗଲେ । ‘‘ଆରେ ! ମୋତେ କିଏ ବଞ୍ଚାଅ,’’ କହି ଗୁରୁଜୀ ଚିତ୍କାର କରିବାକୁ ଲାଗିଲେ ।



# ଠେକୁଆଟି ସମୁଦ୍ର ପାର ହେଲା

ଗୋଟିଏ ଠେକୁଆ ପ୍ରତିଦିନ ସନ୍ଧ୍ୟାରେ ସମୁଦ୍ର କୂଳକୁ ଆସେ ଏବଂ ଘଣ୍ଟା ଘଣ୍ଟା ଧରି ଗୋଟିଏ ଚଟ୍ଟାଣ ଉପରେ ବସି କିଛି ଭାବିବାରେ ଲାଗିଥାଏ। ଦିନେ ଗୋଟିଏ 'ଶାର୍କ' ସମୁଦ୍ରରୁ ଡିଆଁ ମାରି ବାହାରକୁ ଆସିଥିଲା ଏବଂ ଠେକୁଆକୁ ଡାକି କହିଲା, ''ଆରେ ସାଙ୍ଗ ! ତୁମେ ଏକା ବସିକରି କ'ଣ ଦେଖୁଅଛ ?''



ଠେକୁଆଟି କହିଲା, ''ସମୁଦ୍ରର ସେପଟରେ ଥିବା ଛୋଟ ଛୋଟ ପାହାଡ଼ ସମୂହକୁ ଦେଖ । କେତେ ସୁନ୍ଦର ଦିଶୁଛନ୍ତି । ସମୁଦ୍ର ପାର କରି ମୁଁ ସେଠାକୁ ଯିବାକୁ ଚାହୁଁଛି ।''



ଦିନେ ଅଚାନକ ତାକୁ ସେ ଠେକୁଆ କୂଳ ନିକଟରେ ମିଳିଗଲା । ସେ ଏକଦମ୍ ମୋଟା ଶୋଟା ହୋଇ ଯାଇଥିଲା ।

ଶାର୍କ ଖୁସିରେ ପାଣିରେ ଡିଆଁ ମାରିଲା । ସେ ଠେକୁଆକୁ ଡାକିଲା, ''ସାଙ୍ଗ ! କ'ଣ ତୁମେ ଫେରିବାକୁ ଚାହୁଁଚ ? ଏହିଥର ତୁମେ ମୋତେ ମୂର୍ଖ ବନେଇ ପାରିବ ନାହିଁ । ଭଲ ହେବ କି ତୁମେ ସମୁଦ୍ର କୂଳେ କୂଳେ ବୁଲିକରି ଯାଅ ।''

ଠେକୁଆଟି ବଡ଼ ଆତ୍ମବିଶ୍ୱାସ ର ସହ କହିଲା, ''ନାହିଁ, ମୁଁ ପୁଣି ସମୁଦ୍ରକୁ ପାର କରି ଅନ୍ୟ କୂଳ ତକ ଯିବି ।'' ଠେକୁଆ କେତେଦିନ ଧରି ସମୁଦ୍ରକୂଳରେ ବସି ରହିଲା ଏବଂ ଭାବିବାକୁ ଲାଗିଲା । ଦିନେ ତାକୁ ଗୋଟିଏ ନୂଆ ଉପାୟ ଦିଶିଲା...।

- ଜାପାନର ଲୋକକଥା ଉପରେ ଆଧାରିତ



हिन्दी से अनुवादः बिजय गोपाल ओझा



कथा झरना
चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

ଶାର୍କ ଜୋର୍ ଜୋର୍ ରେ ହସିବାକୁ ଲାଗିଲା ଏବଂ କହିଲା, ‘‘ଆରେ ବୋକା ! ତୋତେ ତ ପହଁରିବା ଆସେ ନାହିଁ ! ସମୁଦ୍ର କେମିତି ପାର କରିବୁ ?’’

ଠେକୁଆଟି କହିଲା, ‘‘ମୁଁ ସମୁଦ୍ର ପାର କରିବାକୁ କୌଣସି ଉପାୟ ଖୋଜିନେବି ।’’

ଶାର୍କର ଚେହେରା ଉପରେ ମୃଦୁ ହାସ୍ୟ ଦେଖାଗଲା, ‘‘ଆଚ୍ଛା ! ଦେଖିବା ତୁମେ କେମିତି ପାର କରିବ !’’

ଦିନେ ଠେକୁଆ ଗୋଟିଏ ଉପାୟ ପାଞ୍ଚିଲା । ସେ ଶାର୍କକୁ ପଚାରିଲା, ‘‘ଆମ ଦୁଇଜଣଙ୍କ ଭିତରେ କାହା ପାଖରେ ବେଶୀ ସାଙ୍ଗ ଅଛନ୍ତି ? ତୁମ ପାଖରେ ବା ମୋ ପାଖରେ ?’’ ଶାର୍କଟି ଉତ୍ତର ଦେଲା, ‘‘ମୋର ଦୃଢ ବିଶ୍ୱାସ ଅଛି କି ମୋ ପାଖରେ ଅଧିକ ସାଙ୍ଗ ଅଛନ୍ତି ।’’

ଠେକୁଆଟି କହିଲା, ‘‘ଆଚ୍ଛା ! ତେବେ ନିଜ ସାଙ୍ଗମାନଙ୍କୁ ଗୋଟିଏ ଧାଡିରେ ଏ କୂଳରୁ ସେ ପାହାଡ଼ ସମୂହ ପର୍ଯ୍ୟନ୍ତ ଛିଡ଼ା କରାଅ । ମୁଁ ଗଣି କରି ଦେଖିବାକୁ ଚାହୁଁଛି ।’’



ସବୁ ଶାର୍କମାନେ ଗୋଟିଏ ଧାଡ଼ିରେ ଛିଡ଼ାହୋଇଗଲେ । ଠେକୁଆ ଗୋଟେ ଶାର୍କ ଠାରୁ ଅନ୍ୟ ଶାର୍କର ପିଠି ଉପର ଦେଇ ଡେଇଁ ଡେଇଁ ଗଲା ଏବଂ ଗଣିବାକୁ ଲାଗିଲା, ‘‘ଏକ, ଦୁଇ, ତିନି...’’

ଶେଷରେ ସେ ପାହାଡ଼ ସମୂହ ଉପରେ ପହଞ୍ଚିଗଲା । ସେଠାରେ ଗୋଟେ ଚଟାଣ ଉପରକୁ ଡେଇଁ ଗଲା ଏବଂ କହିଲା, ‘‘ଧନ୍ୟବାଦ୍, ଶାର୍କ ବନ୍ଧୁ ମାନେ ! ତୁମେସବୁ ମିଶି ଗୋଟିଏ ପୋଲ ବନେଇଦେଲ ଏବଂ ସମୁଦ୍ରକୁ ପାର କରିବାକୁ ମୋର ସହାୟତା କଲ ।’’

ତେବେ ତା’ର ଶାର୍କ ସାଙ୍ଗକୁ ଲାଗିଲା କି ଠେକୁଆ ତ ତାକୁ ବୋକା ବନେଇଦେଲା । ଶାର୍କକୁ କ୍ରୋଧ ଆସିଲା । ମନକୁ ମନ ଠେକୁଆର ଚତୁରତାକୁ ପ୍ରଶଂସା କଲା ।

ଶାର୍କ ଯେବେ ପାହାଡ଼ ସମୂହର କୂଳକୁ ଆସେ ଠେକୁଆକୁ ଖୋଜିବାକୁ ଲାଗେ । କିନ୍ତୁ ଠେକୁଆ ଦେଖାଯାଏ ନାହିଁ । କେତେ ମାସ ବିତିଗଲା ।



୧୮) ଗୋଡ଼ ତା'ର ବହୁତ ସାରା,
ଛୋଟ ସାପ ଭଳି ଦିଶେ
ଘର ଭିତରୁ ଯେଉଁଠୁ ଆସେ,
ଭୟାନକ ହୁଏ ଶେଷେ ।

୧୯) ଗୋଟିଏ ପଛରେ ଗୋଟିଏ ଚାଲନ୍ତି,
ଫୌଜ୍‌ଙ୍କ ଭଳି ସିଏ
ଭୋଜନ ସନ୍ଧାନେ ବ୍ୟସ୍ତ ଥାଆନ୍ତି
ସାରାଦିନ ବିତିଯାଏ ।

୨୦) ଅନ୍ଧାର କୋଣରେ ରହିବା ବାଲା,
ଓଦା ଜାଗା ମୋର ପ୍ରିୟ
ଶବଦ ଶୁଣିଲେ ଦୌଡ଼ିପଳାଏ,
ଆଲୋକକୁ କରେ ଭୟ ।

୨୧) ଗୋଟିଏ ମହଲରେ ହଜାରେ କରନ୍ତି ବାସ
ସଭିଙ୍କ ମଧ୍ୟରୁ ଗୋଟିଏ ଅଟଇ ଖାସ ।

हिन्दी से अनुवादः बिजय गोपाल ओझा

ମାଛି, ଜିଆ, ଝଡ଼ିପୋକ, ରେଶମ ପୋକ, ଉକୁଣୀ, ପ୍ରଜାପତି,
ଜୁଳୁଜୁଳିଆପୋକ, ଉଇ, ମଶା, ତେନ୍ତୁଳିଆବିଛା, ପିମ୍ପୁଡ଼ି, ଅସରପା, ରାଣୀମହୁମାଛି, ବୁଢ଼ିଆଣୀ ।





# ଆସ ଉତ୍ତର ଖୋଜିବା



୧) ଖୁବ୍ ନାଚିବା, ଖୁବ୍ ହଲିବା ଏବଂ ଖୁବ୍ ଝୁଲିବା,
ସୁନେଲି ମଣି ଏହା ଉପରେ ଆସିଲେ ତେବେ ବଙ୍କେଇଯିବା,
ଭିତରେ ଧଳା ଦାନା ବାହାରିବ ଦେଖିବା ।

୨) ଦେଖିବାକୁ ବାଡି ଭଳି,
ରସ ଏହାର ଏମିତି ମିଠା,
ପିଇଲେ କରେ ଥଣ୍ଡା,
ଏଥିରୁ ବନେ ଗୁଡର ମୁଣ୍ଡା ।

୩) "ଗଛ ଭୂଇଁର ବାହାରେ, ଫଳ ଭୂଇଁର ଭିତରେ,
କଞ୍ଚା ଖାଅ ବା ଭାଜି ଖାଅ, ପାଇବ ମସ୍ତ ମଜାରେ ।

୪) ଗୋଟିଏ ଅନ୍ନର ଦାନା ଯାହାର ପେଟରେ ଗାର,
ସଭିଏଁ ଖାଆନ୍ତି ତାକୁ ରାଜା ହେଉ ବା ଫକୀର ।

୫) କଳା ରଙ୍ଗର ଆବରଣ ମୋର, ଚାଖିଲେ ହୁଏ ଗୋରା
ଚବେଇ ତାହାକୁ ଖୁବ୍ ଦୌଡ଼େ , ଯୁବତୀ ହେଉ ବା ଯୁବା ।

୬) ବହୁତ ସାରା ପୋଷାକ ପିନ୍ଧେ, ବାଳର ଗୁଚ୍ଛା ଲାଲ,
ଭିତରେ ଏହାର ଏତେ ମୋତି, ଖାଇଲେ ଅତି କମାଲ ।



୭) ଏକ ଅନ୍ନର ଦାନା ଏ ଭଳି, ଯାହାର ଧୂସର ରଙ୍ଗ
ଥଣ୍ଡାଦିନେ ଏହାର ରୋଟି ଖାଅ, ଗୁଡ ବା ଘିଅ ସଙ୍ଗ ।

ଚାଉଳ, ଆଖୁ, ଚିନାବାଦାମ, ଗହମ,
କଳାଚଣା, ମକ୍କା, ବାଜରା





୮) ଛଅଟି ଗୋଡ଼ ଅଟେ ମୋ'ର,
ଉଡ଼ିବା ମୋର କାମ,
ଅଳିଆ ତଥା ମିଠା ଉପରେ ବସେ,
କୁହ ତେବେ ମୋର ନାମ ।



୯) ଅଳିଆରୁ ଖତ ବନାଇ ଥାଉଁ,
ଓଦା ମାଟିରେ ତ ରହିଯାଉଁ ।
ସାପ ଭାବନ୍ତି ପିଲାଏ ମୋତେ,
ୟା'ଙ୍କ ହାତୁଁ ମୁଁ ବଂଚିବି କେମନ୍ତେ ।



୧୦) ପର ବନ୍ଦ କରେନା, ଭଲେ ଉଡେ ବା ଶୋଏ
କିବା ବସିଥାଏ ଖାଲି,
କହନ୍ତି ବର୍ଷା ଆସିବ ବୋଲି
ଯେବେ ଯେବେ ମୁଁ ତଳେ ଉଡୁଥାଏ ।

୧୧) ମୁହଁରୁ ବାହାରେ ସୁତା
ଜାଲଟିଏ ବନିଯାଏ
ଜାଦୁଗର ନୁହେଁ, ଶିକାରୀ ନୁହେଁ,
ଏ ମତୁଆଲା ଟି ତେବେ କିଏ ?

୧୨) ଛୋଟ ରେଶମ ଲାଲ ରେଶମ,
ଦୁନିଆଁ ସାରା ବୁଲେ ରେଶମ
ସଭିଏଁ ଏହାକୁ ଚାହିଁବେ,
ସବୁ ଜାଗାରେ ପାଇବେ ।





୧୩) ସିରପୁର ରୁ ଗାଡି ଚାଲିଲା,
କାନପୁରରେ ଧରାପଡିଲା
ହସ୍ତପୁରରେ ଝଗଡା ହେଲା,
ନଖପୁରରେ ମରା ହେଲା ।

୧୪) ଫୁଲ ସହ କଥା କହି, ସେ ମିଠା ରସ ପିଏ
ରଙ୍ଗ ବେରଙ୍ଗ ପର ତା'ର, ବାସ୍ ଉଡ଼ିବୁଲୁଥାଏ ।

୧୫) ଅନ୍ଧାରେ ଜୁଳୁଜୁଳୁ ଦିଶେ
କୋଳରେ ନେଉଛି ବତୀ
ରାତିରେ ଯେବେ ସେ ଉଡୁଥାଏ
ହରିନିଏ ମନ ମତି ।

୧୬) ମାଟିରେ ସେ ଜନମ ହୋଇ, ମାଟିକୁ ହିଁ ଖାଏ
କାଠ ସଂସ୍ପର୍ଶରେ ଆସିଲେ ସିଏ, ଖାଇ ଶେଷ କରିଦିଏ ।

୧୭) ଗୋଟିଏ ଡାକ୍ତର ଏହିଭଳି,
ଇଞ୍ଜେକସନ୍ ସଭିଙ୍କୁ ଲଗାଏ
କାହାରି କଥା ଶୁଣେନାହିଁ,
ପଇସା ନ ଦେଇ ଉଡ଼ିଯାଏ ।







ପକ୍ଷୀଟି ପୁଣି ବିମୁଖ ହୋଇ ଉଡ଼ିଗଲା । ଉଡୁ ଉଡୁ ସେ ବହୁତ ଦୂରରେ ଗୋଟିଏ ଛୋଟ ଝିଅ ଲାଲୀକୁ ଦେଖିଲା । ଲାଲୀର ମୁଣ୍ଡ ଉପରେ ପାଣି ଭରା କଳସି ଥିଲା । ପକ୍ଷୀଟି ଆଉ କିଛି ଭାବିବାକୁ ଅପେକ୍ଷାକଲା ନାହିଁ । ଚୁପ୍‌ଚାପ୍ ତଳକୁ ଆସିଲା, ଏବଂ ଲାଲୀର ବାଳରେ ସେ ସୁନ୍ଦର ଫୁଲଟିକୁ ଲଗାଇଦେଲା ।



ଲାଲୀ ଆଶ୍ଚର୍ଯ୍ୟ ହୋଇ କହିଲା, ର୍ଙ୍ଘଫୁଲ, ମୋ ପାଇଁ ?'' ପକ୍ଷୀଟି କହିଲା, ''ହଁ ଏ ତୋ' ପାଇଁ । ତୋ'ର ପରିଶ୍ରମ ପାଇଁ, ଯିଏ ଏ ଫୁଲ ପରି ବହୁତ ସୁନ୍ଦର ।''

- ସୁସ୍ମିତା ବାନାର୍ଜୀ

हिन्दी से अनुवादः बिजय गोपाल ओझा





# ପକ୍ଷୀ ଏବଂ ଲାଲୀ

ଦିନେ ଗଛଟି ଖୁସିହୋଇ ପକ୍ଷୀଟିକୁ ଦୁଇଟି ଫୁଲ ଦେଲା । ସେ ଫୁଲ ଦୁଇଟି ବହୁତ ସୁନ୍ଦର ଥିଲା । ପକ୍ଷୀଟି ଭାବିଲା, 'ମୁଁ ଗୋଟିଏ ଫୁଲ ଆଉ କାହାକୁ ଦେଇଦେବି । କିନ୍ତୁ କାହାକୁ ?' ଥଣ୍ଟରେ ସୁନ୍ଦର ଫୁଲଟିକୁ ନେଇ ସେ ଖୋଜିବାକୁ ବାହାରିଲା ।

ଉଡୁ ଉଡୁ ତାକୁ ଏକ ବଗିଚା ଦେଖାଗଲା । ସେଠାରେ ବହୁତ ପ୍ରକାର ର ଫୁଲ ଥିଲା । ବହୁତ ସାରା ଫୁଲ । ପବନରେ ସେ ସବୁର ସୁଗନ୍ଧ ଭରିଥିଲା ।

ଏମିତି ବଗିଚା ପକ୍ଷୀଟି କେବେ ଦେଖି ନ ଥିଲା । କାହିଁ କେତେ ଦୂରରେ ବଗିଚାର ମାଳୀ ଦେଖାଗଲା । ପକ୍ଷୀଟି ଭାବିଲା, 'ଲାଗୁଛି ତାକୁ ଫୁଲ ବହୁତ ପସନ୍ଦ । ତେବେ କ'ଣ ମୁଁ ତାକୁ ଫୁଲ ଦେଇ ଦେବି କି ?'

ଯେମିତି ସେ ତଳକୁ ଆସିଲା, ମାଳୀର ଦୃଷ୍ଟି ତା' ଉପରେ ପଡ଼ିଲା । ମାଳୀ ଚକିତ ହୋଇ କହିଲା, ''ଆରେ ! ତୁମ ପାଖରେ ତ ବହୁତ ସୁନ୍ଦର ଫୁଲ ଅଛି, ମୋତେ ଦେଇଦିଅ । ମୋ ବଗିଚାରେ ଏମିତି ଫୁଲ ନାହିଁ । ଏହା ଦ୍ୱାରା ମୋ ବଗିଚା ଦୁନିଆର ଶ୍ରେଷ୍ଠ ବଗିଚା ହେବ । ମୋତେ ପୁରସ୍କାର ମିଳିବ ।''



ପକ୍ଷୀଟି ବିମୁଖ ହୋଇ ଉଡିଗଲା । ଉଡ୍ତୁ ଉଡ୍ତୁ ତାକୁ ଖାଲି ରଂଗ ହି ରଂଗ ଦେଖାଗଲା । ଜଣେ ଲୋକ କପଡ଼ା ଉପରେ ଫୁଲ ଚିତ୍ର ସିଲାଇ କରୁଥିଲା । ପକ୍ଷୀଟି ଭାବିଲା, 'ଲାଗୁଛି ଏହାକୁ ସୁନ୍ଦରତା ବହୁତ ପସନ୍ଦ, ମୁଁ ଏହାକୁ ହିଁ ଫୁଲ ଦେବି ।'



ସେ ଯେମିତି ତଳକୁ ଆସିଲା, ସେ ଲୋକଟି ଚଢ଼େଇଟିକୁ ଦେଖି କହିଲା, ''ଆରେ ! ତୁମ ପାଖରେ ତ ବହୁତ ସୁନ୍ଦର ଫୁଲ ଅଛି, ମୋତେ ଦେଇଦେ । ଏମିତି ଫୁଲ ମୋର ସିଲାଇ ରେ ନାହିଁ । ଏ ଫୁଲକୁ ମୁଁ ସିଲାଇକରି ଦେଲେ ମୋର କାମ ଦୁନିଆଁର ସର୍ବ ଶ୍ରେଷ୍ଠ ସିଲାଇ ହେବ । ମୁଁ ରାଜାଙ୍କୁ ତାକୁ ଭେଟିଦେବି ।''

ପକ୍ଷୀଟି ବିମୁଖ ହୋଇ ଉଡ଼ିଗଲା । ଉଡ୍ତୁ ଉଡ୍ତୁ ଗୋଟିଏ ଜାଗାରେ ତାକୁ ବହୁତ ପାରା ଦେଖାଗଲା । ଜଣେ ସ୍ତ୍ରୀ ଲୋକଟିଏ ସେମାନଙ୍କୁ କିଛି ଶସ୍ୟ ଦେଉଥିଲା । ଏହା ଦେଖି ପକ୍ଷୀଟି ବହୁତ ଖୁସି ହେଲା । ସେ ଭାବିଲା, 'ଏ ସ୍ତ୍ରୀ ଲୋକ ପଶୁ ପକ୍ଷୀ ମାନଙ୍କୁ ବହୁତ ଭଲ ପାଏ । ମୁଁ ଏହାକୁ ହିଁ ଫୁଲ ଦେବି ।'

ଯେମିତି ପକ୍ଷୀଟି ତଳକୁ ଆସିଲା, ସେ ସ୍ତ୍ରୀ ଲୋକଟିର ଦୃଷ୍ଟି ସେ ପକ୍ଷୀଟି ଉପରେ ପଡ଼ିଲା । ସେ ପକ୍ଷୀଟିକୁ କହିଲା, ''ଆରେ ! ତୋ ପାଖରେ ତ ବହୁତ ସୁନ୍ଦର ଫୁଲ ଅଛି । ମୋତେ ଦେଇଦେ । ମୁଁ ଏମିତି ଫୁଲ ଭଗବାନଙ୍କୁ ଅର୍ପଣ କରିବି ତ ମୋର ସବୁ ମନ କାମନା ପୂର୍ଣ୍ଣ ହେବ ।''



ସିଂହ ଖୁବ୍ ଜୋର୍‌ରେ ତିନିଥର ଗର୍ଜନ କଲା । ସାରା ଜଂଗଲ ଥରି ଉଠିଲା । ସବୁ ପଶୁଗଣ ସ୍ତମ୍ଭୀଭୁତ ହୋଇ ଚୁପ୍ ଚାପ୍ ଛିଡ଼ାହୋଇଗଲେ । ସିଂହ ପଚାରିଲା, '' କିଏ ତୁମ ସମସ୍ତଙ୍କୁ କହିଲା କି ଧରିତ୍ରୀ ଫାଟିଯାଇଛି ବୋଲି ?''

ବାଘ କହିଲା, ''ମୋତେ ହାତୀ ବତାଇଲା ।'' ତା ପରେ ଯେବେ ହାତୀକୁ ପଚାରିଲା ସେ କହିଲା, ''ମୋତେ ତ ବଳଦ କହିଥିଲା ।'' ଏହି ପ୍ରକାର ସମସ୍ତେ ଅନ୍ୟକୁ ଇଶାରା କରିବାରେ ଲାଗିଲେ ।

ଶେଷରେ ଯେବେ ଠେକୁଆକୁ ପଚାରିଲେ ସେ କହିଲା, ''ହଁ ! ମୁଁ ଧରିତ୍ରୀ ଫାଟିବାର ଶବ୍ଦ ଶୁଣିଥିଲି ।'' ସିଂହ କହିଲା, ''ସେ ଜାଗାଟା କେଉଁଠି ? ମୋତେ ଦେଖାଅ ।''

ଠେକୁଆ ତାଙ୍କୁ ସେ ଜାଗାକୁ ନେଇଗଲା, ଯେଉଁଠାରେ ସେ ଶୋଇଥିଲା । ପାଖରେ ଫଟା ବେଲ ପଡ଼ିଥିଲା । ସମସ୍ତେ ତାକୁ ଦେଖୁଥିଲେ ସେତେବେଳେ ଆଉ ଗୋଟିଏ ବେଲ ପୁଣି ତାଳପତ୍ର ଉପରେ ଆସି ପଡ଼ିଲା ।

ସିଂହ ଜୋର୍ ଜୋର୍‌ରେ ହସିବାକୁ ଲାଗିଲା, ''ଦେଖ ! ଠେକୁଆ ଏହି ଶବ୍ଦ ଶୁଣିଥିବ । ନିଦରେ ସେ ଭାବିଲା କି ଧରିତ୍ରୀ ଫାଟିଗଲା ।'' ସମସ୍ତଙ୍କର ଜୀବନରେ ନୂଆ ଜୀବନ ଆସିଲା ଆଉ ସମସ୍ତେ ଖୁବ୍ ଜୋର୍ ଜୋର୍‌ରେ ହସିବାକୁ ଲାଗିଲେ ।

- ଜାତକ କଥା

हिन्दी से अनुवादः बिजय गोपाल ओझा






अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# 20 ଧରିତ୍ରୀ ଫାଟିଲା

ଦିନେ ଗୋଟିଏ ଠେକୁଆ ଲମ୍ବା ତାଳଗଛର ତଳେ ଶୋଇଥିଲା । ପାଖରେ ଗୋଟିଏ ବେଲ ଗଛ ବି ଥିଲା । ହଠାତ୍ ଗୋଟିଏ ବେଲଫଳ ଧମ୍ କରି ତାଳଗଛର ପତ୍ର ଉପରେ ଆସି ପଡ଼ିଲା । ଠେକୁଆ ଟି ଗଭୀର ନିଦରେ ଶୋଇଥିଲା । ଏ ଶବ୍ଦ ଶୁଣିକରି ସେ ବହୁତ ଡ଼ରି ଗଲା ।

''ଆରେ! ଧରିତ୍ରୀ ଫାଟୁଛି,'' ଚିତ୍କାର କରି ହଡ଼ବଡ଼ ହୋଇ ଦୌଡ଼ିବାକୁ ଲାଗିଲା । ତାର ସାଥିମାନେ କିଛି ବୁଝିପାରିଲେନି । ସେମାନେ ବି ତାର ପଛେ ପଛେ ଦୌଡିବାକୁ ଲାଗିଲେ ।

ରାସ୍ତାରେ ହରିଣଟିଏ ସେମାନଙ୍କୁ ଦୌଡ଼ିବା ଅବସ୍ଥାରେ ଦେଖି କହିଲା, ''ଏତେ ଜୋର୍‌ରେ କାହିଁକି ଦୌଡୁଛ ଭାଇ ?''





ଠେକୁଆଟି କହିଲା, ''ଧରିତ୍ରୀ ଫାଟୁଛି, ଦୌଡ ! ଦୌଡ଼ !'' ହରିଣ ବି ସେମାନଙ୍କ ସାଥିରେ ଦୌଡ଼ିବାକୁ ଲାଗିଲା । ସେହିକ୍ଷଣି ଭାଲୁ ବି ସେମାନଙ୍କୁ ଦୌଡ଼ିବାର ଦେଖି ହରିଣକୁ ଡାକି ପଚାରିଲା, ''ଆରେ ଭାଇ ! ତୁମ୍ଭେମାନେ ଏମିତି କାହିଁକି ଦୌଡୁଛ ?''

ହରିଣ ଦୌଡୁ ଦୌଡୁ କହିଲା, ''ଧରିତ୍ରୀ ଫାଟିଗଲା ! ତେଣୁ ତୁମେ ବି ଦୌଡ଼ !'' ଭାଲୁ ବି ଦୌଡ଼ିବାରେ ଲାଗିଲା । ସମସ୍ତଙ୍କୁ ଦୌଡ଼ିବାର ଦେଖି ଶିଆଳକୁ ଆଶ୍ଚର୍ଯ୍ୟ ଲାଗିଲା । ସେ ଭାଲୁକୁ ଅଟକାଇ ପଚାରିଲା, ''କଣ ହେଲା ? ତୁମେମାନେ ସବୁ ଏମିତି କାହିଁକି ଦୌଡୁଛ ?''

''ଆରେ, ତୋତେ ଜଣା ନାହିଁ କି ! ଧରିତ୍ରୀ ଫାଟୁଛି । ତେଣୁ ତୁ ବଞ୍ଚିବାକୁ ଚାହୁଁଛୁତ ଦୌଡ଼,'' ଚିତ୍କାର କରି ଭାଲୁ ବି ଦୌଡ଼ିବାକୁ ଲାଗିଲା । ଗୋଟିଏ ପରେ ଗୋଟିଏ ବଳଦ, ଘୁଷୁରୀ, ଗଣ୍ଡା, ହାତୀ, ବାଘ ସମସ୍ତେ ଦୌଡ଼ିବାରେ ଲାଗିଲେ ଏବଂ ସେମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଲା ।

ସେହିକ୍ଷଣି ଦୂରରୁ ସିଂହ ଦୌଡ଼ି ଦୌଡ଼ି ଆସୁଥିବା ପଶୁ ସେନାକୁ ଦେଖିଲା । ସେ ଭାବିଲା ନିଶ୍ଚୟ କିଛି ଗଡ଼ବଡ଼ ହୋଇଛି । ଯେତେବେଳେ ସମସ୍ତେ ପାଖକୁ ଆସିଲେ ସିଂହ କହିଲା, ''ଟିକେ ରୁହ, ତୁମେ ସବୁ ଏମିତି କାହିଁକି ଦୌଡୁଛ ?''

ବାଘ ଠିକ୍ ଭାବରେ କିଛି କହି ବି ପାରିଲାନି । ଧଇଁ ସଇଁ ହୋଇ କହିଲା, ''ଧରିତ୍ରୀ ଫାଟିଗଲାଣି ଦୌଡ଼ ! ଦୌଡ଼ !''

ସିଂହ ଭାବିଲା, 'ନିଶ୍ଚିତ ଭାବରେ ସମସ୍ତଙ୍କୁ କିଛି ଭୁଲ ବୁଝାମଣା ହୋଇଛି । ଯେଉଁଥି ପାଇଁ ସମସ୍ତେ ଏମିତି ଭାବରେ ବାଉଳା ଓ ଭୀତତ୍ରସ୍ତ । ଶୀଘ୍ର ଏମାନଙ୍କୁ ଏ ପରିସ୍ଥିତିରୁ ବାହାର କରିବାକୁ ପଡ଼ିବ ।'





ଦିନସାରା ଏହିଖେଳ ଚାଲିଲା । ସଂଧ୍ୟାବେଳକୁ ଯେତେବେଳେ ଭଡୋ ମଈଁଷି ଯିବାକୁ ବାହାରିଲା ମେଂଢୁଏବଂ ଢେଙ୍କୁ ତାକୁ କହିଲେ, ''କାଲି ପୁଣି ଭଡୋ ଆସିବୁ, ଆମେ ମିଶି ଖେଳିବା ।'' ଭଡୋ ମଈଁଷି ତା ମୁଣ୍ଡ ଓ ଲାଞ୍ଜ ହଲାଇଲା ଏବଂ ଜୋର୍ କରି ବୋବାଇ ନିଜର ସମ୍ମତି ଜଣାଇଲା । ତା' ପରଦିନ ସକାଳେ ସେ ଦୌଡ଼ି ଦୌଡ଼ି ଆସିଲା । ପୋଖରି ଭିତରେ ପଶି ଧୁମ୍ କରି ଯେମିତି ବସି ପଡ଼ିଲା ସେମିତି ବେଙ୍ଗମାନଙ୍କର ଡେଇଁବା, କୁଦିବା ଆଉ ଟର୍‌ର୍ ଟର୍‌ର୍ କରି ରଡ଼ି କରିବା ଆରମ୍ଭ ହୋଇଗଲା । ନୂଆ ଦିନ ! ନୂଆ ଖେଳ !

- ତ୍ରିପୁରାରୀ ଶର୍ମା

हिन्दी से अनुवादः बिजय गोपाल ओझा


कथा झरना
चित्रांकनः उमा कृष्णास्वामी


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ଭଡୋ ମଈଁଷିର ଲାଞ୍ଜ



ଭଡୋ ମଈଁଷି ବହୁତ ଅଳସୁଆ ଥିଲା । ପୋଖରୀରେ ସେ ପଶି ସେଠି ବସିଯାଉଥିଲା ଏବଂ ଆଉ ସେଠାରେ ହଲଚଲ ହେଉନଥିଲା । ତା ଦ୍ୱାରା ସେ ପୋଖରୀର ରହିବା ବେଙ୍ଗମାନେ ବହୁତ ଦୁଃଖି ହେଉଥିଲେ ।

ପୋଖରୀଟି ଛୋଟଥିଲା ଏବଂ ଭଡୋର ତା' ଭିତରେ ରହିବା ପରେ ସେମାନଙ୍କର ଖେଳିବା କୁଦିବା ପାଇଁ ଜାଗା କମ୍ ହେଉଥିଲା । ସେମାନେ ମୁହଁ ଫୁଲାଇ କୋଣରେ ଗୁମ୍‌ସୁମ୍ ହୋଇ ବୁଲିକରି ବସି ରହୁଥିଲେ ।

''କ'ଣ, ଆମେ ଭଡୋକୁ ସାଥିରେ ଖେଳାଇବା ?'' ମେଂଢୁ ବେଙ୍ଗଟି ଢେଙ୍କୁ ବେଙ୍ଗକୁ କହିଲା ''ସେ କେମିତି ରାଜି ହେବ ?'' ଢେଙ୍କୁ ଉତ୍ତର ଦେଲା, ''ସେ ତ ହଲେବି ନାହିଁ ।''



‘‘ନ ହଲୁ,’’ ମେଂଢ଼ୁ କହିଲା, ‘‘ଆମେ ତା’ଠାରୁ ଦୂରକୁ କାହିଁକି ଯିବା ?’’ ଆମେ ତା’ଉପରଦେଇ ଡେଇଁ ପାରିବା । ଢେଙ୍କୁ କୁ ଏ କଥା ବହୁତ ପସନ୍ଦ ଆସିଲା ।

ଆଗଥର ଯେବେ ଭଭୋ ଆସିଲା ମେଂଢ଼ୁ ତାର ବାମପାଖରେ ଯାଇବସିଲା ଏବଂ ଢେଙ୍କୁ ତା’ର ଡାହାଣ ପାଖରେ । ତା’ର ଉପରେ ଡେଇଁକରି ଜଣେ ବାମରୁ ଡାହାଣ ତ ଅନ୍ୟ ଜଣକ ଡାହାଣରୁ ବାମ କୁ ଆସିଲା ।

ଭଭୋ ଉପରେ ପାଣି ଛିଟିକି କରି ପଡ଼ିଲା, କିନ୍ତୁ ସେ କିଛି କଲା ନାହିଁ । ଦ୍ୱିତୀୟ ଥର ଯେବେ ମେଂଢ଼ୁ ଏବଂ ଢେଙ୍କୁ ତା’ଉପରେ କୁଦା ମାରିଲେ ସେ ବେକ ବୁଲାଇକରି ଦେଖିଲା ।

ସେ ବୁଝିପାରିଲା ସେମାନେ କ’ଣ ଖେଳ ଖେଳୁଛନ୍ତି । ତା’ ପରେ ଯେବେ ସେମାନେ ଡିଆଁ ମାରିଲେ ସେ ନିଜ ଲାଞ୍ଜ ଉଠାଇଲା ଏବଂ ସେଥିରେ ଢେଙ୍କୁ କୁ ଛନ୍ଦିଦେଲା ।

ଢେଙ୍କୁ ହଇରାଣ ହୋଇଗଲା । ମେଂଢ଼ୁ ଡେଇଁକରି ଭଭୋର ଲାଞ୍ଜକୁ ଛୁଇଁଲା । ଲାଞ୍ଜରୁ ଢେଙ୍କୁ ବାହାର ହେଲା ଏବଂ ଲାଞ୍ଜକୁ ମେଂଢ଼ୁ ପାଖକୁ ବୁଲାଇ ଦେଲା । ଲାଞ୍ଜ ମେଂଢ଼ୁକୁ ଛୁଇଁବା ପୂର୍ବରୁ ଢେଙ୍କୁ ତାକୁ ଛୁଇଁନେଲା । ଭଭୋ ଲାଞ୍ଜକୁ ତା ପାଖକୁ ବୁଲେଇଲା । ଢେଙ୍କୁ କୁଦା ମାରିଲା ସେତେବେଳକୁ ଲାଞ୍ଜ ତାକୁ ଛୁଇଁସାରିଥିଲା । ସେତେବେଳେ ମେଂଢ଼ୁ ଲାଞ୍ଜ ପାଖକୁ ଡିଆଁ ମାରିଲା ।



ଭଭୋ ତାର ଲାଞ୍ଜକୁ ପୁଣି ତା ପାଖକୁ ବୁଲାଇଲା । ଏବେ ତାକୁ ବହୁତ ମଜାଲାଗୁଥିଲା । ସେ ନିଜ ଲାଞ୍ଜକୁ କେବେ ମେଂଢ଼ୁ ପାଖକୁ ବୁଲାଇଲା ତ କେବେ ଢେଙ୍କୁ ପାଖକୁ, କେବେ ବାମତ କେବେ ଡାହାଣ ।

ଖେଳ ଏମିତି ଚାଲିଲା କି ବେଙ୍ଗମାନେ ପ୍ରଥମେ ଲାଞ୍ଜକୁ ଛୁଇଁବେ କି ଲାଞ୍ଜ ପ୍ରଥମେ ବେଙ୍ଗମାନଙ୍କୁ, ଦୂରରେ ଛିଡ଼ାହୋଇ ଅନ୍ୟ ବେଙ୍ଗମାନେ ମଧ୍ୟ ଏ ଖେଳକୁ ଦେଖୁଥିଲେ ।

ଜଣେ ଜଣେ କରି ସେମାନେବି ଖେଳରେ ଭାଗନେଲେ । ଭଭୋ ମଇଁଷି କେଉଁପାଖକୁ ବି ଲାଞ୍ଜବୁଲାଇଲେ ବେଙ୍ଗମାନେ କୁଦା ମାରୁଥିଲେ ଠପ୍ ! ଠପ୍ ! ମଝିରେ ମଝିରେ ବେଙ୍ଗ ମାନଙ୍କର ଟର୍ର-ଟର୍ର ଶବ୍ଦ ଶୁଭୁଥିଲା କେତେବେଳେ ଭଭୋମଇଁଷିର ବୋବାଇବାର ଶବ୍ଦ ହମ୍ବା...ହମ୍ବା...।

# ନା-ଦେବୁ ଏବଂ ନା ଛାଡ଼ିବୁ

ଗୋଟିଏ ଗ୍ରାମରେ ଦୁଇଜଣ ସାଙ୍ଗ ଥିଲେ । ଗ୍ରାମବାସୀ ଜଣକୁ 'ନା-ଦେବୁ' ନାମରେ ଡାକୁଥିଲେ କାରଣ ସେ କାହାକୁ କିଛି ଦେଉ ନ ଥିଲା । ଅନ୍ୟ ଜଣକୁ 'ନା-ଛାଡ଼ିବୁ' ନାମରେ ଡାକୁଥିଲେ କାରଣ ସେ କାହାର ପିଛା ଛାଡୁନଥିଲା ।

ଗୋଟିଏ ଦିନ ବହୁତ ଜୋର୍‌ରେ ବର୍ଷା ହେଉଥିଲା । 'ନା-ଛାଡ଼ିବୁ' ପାଖରେ ଛତା ନ ଥିଲା । ସେ 'ନା-ଦେବୁ' କୁ ଛତା ଉଧାର ମାଗିଲା । ସେ ତ କାହାକୁ କିଛି ସହଜରେ ଦେଲାବାଲା ନୁହେଁ । କହିବାକୁ ଲାଗିଲା, ''ମିତ ! ମୁଁ ଚାହୁଁଛି ତୁମେ ସଦାବେଳେ ନିଜ ଗୋଡ଼ରେ ଛିଡ଼ା ହୁଅ । ମୁଁ ଯଦି ବର୍ତ୍ତମାନ ଛତା ଦେଇ ତୁମକୁ ସାହାଯ୍ୟ କରିବି ତେବେ ତୁମେ କେବେ ବି ଛତାଟିଏ କିଣିବନି । ଯେବେ ବର୍ଷା ହେବ ତେବେ ତୁମେ ହିଁ ଛତା ମାଗିବ ।''



'ନା-ଛାଡିବୁ' ଭାବିଲା ଏଇଟା ହିଁ ପ୍ରକୃତ ସମୟ । ''ମିତ୍ର ! ମୁଁ ତୁମକୁ ଉଦ୍ଧାର କରିପାରିବି, ହେଲେ ତୁମେ ଆଉ କେବେବି ପହଁରିବା ଶିଖି ପାରିବନି । ସବୁବେଳେ ତୁମେ ଏହି ଅପେକ୍ଷାରେ ହିଁ ରହିବ କିଏ ବି ଆସି ତୁମକୁ ବଞ୍ଚାଇବ । କେଉଁ ପ୍ରକାରରେ ବି ନିଜେ କୂଳରେ ପହଞ୍ଚିଯାଅ,'' କହି ସେ ଆଗକୁ ଚାଲିଗଲା ।

'ନା-ଦେବୁ' ନିଜର ଭୁଲ ବୁଝିପାରିଲା । ସେ କହିଲା, ''ମିତ୍ର ! ମୋତେ କ୍ଷମା କରିଦିଅ, ଯଦି ତୁମେ ମୋତେ ନ ବଞ୍ଚାଇବ ତେବେ ମୁଁ ପାଣିରେ ବୁଡିଯିବି । ଆଗରେ ମୁଁ ତୁମକୁ କେବେ ବି ଉପଦେଶ ଦେବିନି ।''

'ନା-ଛାଡ଼ିବୁ' କୁ ଦୟା ଆସିଗଲା । ସେ 'ନା-ଦେବୁ' କୁ ବଞ୍ଚାଇନେଲା । ସେହିଦିନ ଠାରୁ ଦୁହେଁ ଘନିଷ୍ଠ ବନ୍ଧୁ ବନିଗଲେ । ଗାଆଁ ଲୋକେ ଦୁହିଁଙ୍କୁ ତାଙ୍କର ପ୍ରକୃତ ନାମ ସୂର୍ଯ୍ୟ ଏବଂ ଚନ୍ଦ୍ର ନାମରେ ଡାକିବାକୁ ଲାଗିଲେ । ଏବେ ତ ଦୁହିଁଙ୍କ ଭିତରେ ପରିବର୍ତ୍ତନ ଆସିଗଲା ନା !

- ତାମିଲ ନାଡୁ ଲୋକ କଥା



हिन्दी से अनुवादः बिजय गोपाल ओझा




अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



ବେଚାରା 'ନା-ଛାଡ଼ିବୁ' ! ବର୍ଷାରେ ଭିଜି ଭିଜି ଘରକୁ ଫେରିଲା ।

କିଛି ଦିନ ପରେ ସାଙ୍ଗଦୁହେଁ ତାକ ଘରେ ମିଳିଲେ । 'ନା-ଛାଡ଼ିବୁ' ଗୋଟିଏ ଚିଠି ଲେଖିବା ପାଇଁ 'ନା-ଦେବୁ' କୁ କଲମ ମାଗିଲା । ସେ ଟିକେ ହେଲେ ଦେବାର ଲୋକ । ତାକୁ ପରାମର୍ଶ ଦେବାରେ ଲାଗିଲା, ''ମୋର ପ୍ରିୟ ସାଙ୍ଗ ! ଉଧାର ନେବାର ଅଭ୍ୟାସ ଛାଡ଼ିଦେ । ମୁଁ ତୁମର ଭଲ ପାଇଁ କହୁଛି । ନିଜ କଲମ ଆଣ ଆଉ ସେଥିରେ ଚିଠି ଲେଖ ।''

'ନା-ଛାଡ଼ିବୁ' ଚିଡ଼ିଗଲା । ସେ ତାର ସାଙ୍ଗକୁ ବୁଦ୍ଧି ଶିଖାଇବା ପାଇଁ ଭାବିଲା । ପ୍ରକୃତ ସମୟର ଅପେକ୍ଷାରେ ରହିଲା ।

ଶେଷରେ ସେ ଦିନ ବି ଆସିଲା । ଗୋଟିଏ ଦିନ ସାଙ୍ଗ ଦୁହେଁ ପାଖ ଗାଆଁର ମେଳା ଦେଖିବାକୁ ଗଲେ । ରାସ୍ତାରେ ନଦୀଟିଏ ପଡ଼ିଲା । ତା' ଉପରେ ଗୋଟିଏ କାଠର ପୋଲ ଥିଲା । ଦୁହେଁ ସେ ପୋଲ ଉପରେ ଚାଲିବାକୁ ଲାଗିଲେ ।

ହଠାତ୍ 'ନା-ଦେବୁ' ର ଗୋଡ଼ ଖସିଗଲା ଏବଂ ସେ ନଦୀରେ ଖସିପଡ଼ିଲା । ତାକୁ ପହଁରିବା ଜଣା ନ ଥିଲା । ''ରକ୍ଷାକର ! ରକ୍ଷାକର !'' କହି ଚିତ୍କାର କରିବାକୁ ଲାଗିଲା ।

ଶିଆଳଟି ଆଶ୍ଚର୍ଯ୍ୟ ହୋଇ ପଚାରିଲା, ''ଆରେ ଭାଇ ! ଏମିତି କାହିଁକି ଝୁଲୁଛ ? ମୁଁ ନଦୀରେ ପଡ଼ିଯିବି ।''

ଓଟଟି କହିଲା, ''ପେଟ ଭରି ଖାଦ୍ୟ ଖାଇବା ପରେ ଏହିଭଳି ପାଣିଭିତରେ ଲୋଟ୍ ପୋଟ୍ ହେବା ମୋର ସ୍ୱଭାବ । ମୁଁ କ'ଣ କରିବି ?'' ଏହା କହି ଓଟ ପାଣି ଭିତରେ ଗଡ଼ପଡ଼ ହେବାରେ ଲାଗିଲା । ବିଚରା ଶିଆଳ ! ପାଣିରେ ପଡ଼ିଗଲା ।

- ପଞ୍ଚତନ୍ତ୍ର ର କାହାଣୀ



हिन्दी से अनुवादः बिजय गोपाल ओझा


चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ଓଟ ଏବଂ ଶିଆଳ



''ଓଟ ଭାଇ ! ଟିକେ ନଦୀର ସେ ପାଖ ଜମିକୁ ଦେଖିଲ । ସେଠାରେ ବହୁତ ବେଶୀ କାକୁଡ଼ି ଫଳିଛି । କ'ଣ ଆମେ ଆଜି ସେଠାକୁ ଯିବା ?'' ଶିଆଳଟି ବଡ଼ ଉତ୍ସାହର ସହିତ ପଚାରିଲା ।

ଓଟ କହିଲା, ''ହଁ ! ହଁ ! ନିଶ୍ଚୟ ଯିବା ।'' ଓଟ ଟି ଶିଆଳକୁ ନିଜ ପିଠି ଉପରେ ବସାଇଲା । ଦୁହେଁ ନଦୀ ପାର ହୋଇ କାକୁଡ଼ିର ଖେତକୁ ପଶିଗଲେ ଏବଂ କାକୁଡ଼ି ଖାଇବାରେ ଲାଗିଲେ । କାକୁଡ଼ି ବହୁତ ସ୍ୱାଦିଷ୍ଟ ଥିଲା ।





ଶିଆଳର ପେଟ ତ ଛୋଟ ଥିଲା । ତା'ପେଟ ଦୁଇ ଚାରିଟା କାକୁଡ଼ି ଖାଇବା ପରେ ଭରିଗଲା । ଉତ୍ତେଜିତ ହୋଇ ସେ ଏପଟ ସେପଟ ଦୌଡ଼ିବାରେ ଲାଗିଲା । ଓଟ ଫଳ ଖାଇବାରେ ମଗ୍ନ ଥିଲା । ''ଓଟ ଭାଇ ! କଣ ଏବେ ବି ତୁମେ ଖାଇସାରିନାହଁ ?'' ଶିଆଳ ବାରମ୍ବାର ପଚାରିଲା ।

ଓଟ ଉତ୍ତର ଦେଲା, ''ମୋର ପେଟ ବଡ଼ ଅଟେ ତ ! ଏବେ ବି ଅଧା ପେଟ ଭରି ନାହିଁ । କିଛି ସମୟ ପାଇଁ ଚୁପ୍ ରହ ଏବଂ ମୋତେ ଖାଇବାକୁ ଛାଡ଼ିଦେ ।''

କିନ୍ତୁ ଶିଆଳକୁ ଶାନ୍ତି କାହିଁ ? ''ପେଟ ଭରି ଖାଇବାପରେ ବି ମୁଁ ଚୁପ୍ ରହିପାରୁନି ।'' ଏ କଥା କହି ଶିଆଳ ଆକାଶକୁ ଅନାଇଁ 'ହୁକେହୋ... ହୁକେହୋ'... କରିବାରେ ଲାଗିଲା ।

ଶବ୍ଦ ଶୁଣି ଆଖ ପାଖରୁ ଗାଁ ଲୋକେ ବାଡ଼ି ଧରି ଦୌଡ଼ି ଦୌଡ଼ି ଆସିଲେ । ଶିଆଳ ବହୁତ ଶୀଘ୍ର ଦ୍ରୁତଗତିରେ ଦୌଡ଼ି ପଳାଇଲା ଏବଂ ନଦୀ କୂଳରେ ଯାଇ ପହଞ୍ଚିଲା ।

ବେଚାରା ଓଟ ! ଦୌଡ଼ିପାରିଲାନି ଏବଂ ଫସିଗଲା । ତା'କୁ ବହୁତ ମାଡ଼ ଖାଇବାକୁ ପଡ଼ିଲା । ଯନ୍ତ୍ରଣାରେ ଛଟପଟ ହୋଇ ସେ ନଦୀ କୂଳରେ ପହଞ୍ଚିଲା ।

ଶିଆଳ ସହାନୁଭୂତିର ନାଟକ କରି କହିଲା, ''ହାୟରେ ଭାଇ ! କେତେ ଭୟଙ୍କର ଭାବରେ ପିଟିଦେଲେ ତୁମକୁ ! ମୋତେ ବହୁତ ଦୁଃଖ ଲାଗୁଛି ।''

ଓଟ କହିଲା, ''କିଛି କଥା ନାହିଁ । ମୋ ଉପରେ ଚଢ଼ି ଯାଅ । ଏଠାରୁ ଯେତେ ଶୀଘ୍ର ପଳେଇ ଯିବା ।'' ଦୁହେଁ ନଦୀର ମଝା ମଝିରେ ପହଞ୍ଚିଲେ । ତେବେ ଓଟ ହଠାତ୍ ଅଟକିଗଲା ଏବଂ ଅଣ୍ଟାକୁ ହଲାଇ କରି ବାମ ଓ ଡାହାଣକୁ ଝୁଲିବାକୁ ଲାଗିଲା ।

ଏତେ ଭଲ ହେଲା ପିଲାଟିର ପେଟ ଭିତରକୁ ଅଧିକ ପାଣି ଯାଇ ନ ଥିଲା । ତାର ବାପା ମା' ତାକୁ ଉଠାଇ ନେଲେ । ଆମେ ସବୁ ମିଶି ତାକୁ ପାଖ ଡାକ୍ତରଖାନା କୁ ନେଇଗଲୁ ।

ଡାକ୍ତର ପିଲାଟିର ପରୀକ୍ଷା କଲେ ଏବଂ କହିଲେ ଆପଣମାନେ ଠିକ୍ ସମୟରେ ସାହାଯ୍ୟ କଲେ । ଡରିବାର ଆଉ କୌଣସି କାରଣ ନାହିଁ । ପିଲାଟିର ବାପା ମାଆ ଆମକୁ ଧନ୍ୟବାଦ୍ ଦେଲେ ଆଉ ଘରକୁ ଗଲେ ।

ଡାକ୍ତରଖାନାରେ କମଳାକୁ ଡାକ୍ତରଙ୍କୁ ସାହାଯ୍ୟ କରିବା ବେଳେ ଦେଖିଲୁ । ତା' ପରେ କାମ ଶେଷହେବା ପରେ ଆମେ ତିନିଜଣ ଚାଲି ଚାଲି ଶିବିରକୁ ଫେରିଆସିଲୁ ।

ସେଦିନ ବହୁତ ରାତି ପର୍ଯ୍ୟନ୍ତ ଆମେ ସାରାଦିନରେ ଘଟିଥିବା ଘଟଣା ଗୁଡ଼ିକ ଏବଂ ନିଜ ନିଜର ଅନୁଭବ ବିଷୟରେ କଥାବାର୍ତ୍ତା ହେଲୁ ।



हिन्दी से अनुवादः बिजय गोपाल ओझा





# ମେଳାରେ...

ସେଦିନ ଆମ ଶ୍ରେଣୀର ସମସ୍ତଙ୍କ ମନ ଖୁସି ଓ ଉତ୍ସାହରେ ଉଲ୍ଲସିତ ଥିଲା । ସ୍କୁଲ ର ଛୁଟି ହେବା ପରେ ମୁଁ ଦୌଡ଼ି ଦୌଡ଼ି ଘରେ ପହଞ୍ଚିଲି । ମା' କୁ ପଚାରିଲି, "ମା ! ମା ! ଆଗସପ୍ତାହରେ ସ୍କୁଲ ତରଫରୁ ଏକ ଶିବିର ଲାଗିବ । କମଳା, ରହିମ ସମସ୍ତେ ସେଥିରେ ଭାଗନେବେ । କଣ ମୁଁ ସେଥିରେ ଭାଗ ନେଇପାରିବି ?"

ମା' ପଚାରିଲେ, "ଏ ଶିବିର କେଉଁଠି ଲାଗିବ ?"

ମୁଁ କହିଲି, 'ମା' ପାଖ ଗାଁ ରେ ଲାଗିବ । ସେଠାରେ ଗୋଟିଏ ବଡ ମେଳା ଲାଗିବ । ଆଖ ପାଖ ଗାଁରୁ ବହୁତ ଲୋକ ଆସିବେ । ଆମ୍ଭେମାନେ ସେଠାରେ ରହି ଲୋକଙ୍କର ସେବା କରିବୁ ।"



ରବିବାର ଦିନ ଆସିଗଲା । ସମସ୍ତେ ନିଜ ନିଜର ଆସବାବ ପତ୍ର ନେଇ ବସ୍‌ରେ ବସିଗଲେ । ଆମର ପିତା ମାତା ଆମକୁ ଛାଡ଼ିବାକୁ ଆସିଥିଲେ । ବସ୍ ଚାଲିଲାବେଳେ ଆମେ ସମସ୍ତେ ହାତ ହଲାଇ ପିତା ମାତାଙ୍କୁ ଟା...ଟା... କଲୁ । ସାରା ରାସ୍ତା ଆମେ ସବୁ ଗୀତ ଗାଇ ଗାଇ ଗଲୁ । ବହୁତ ଜଲ୍‌ଦି ଆମେ ଗାଁରେ ପହଞ୍ଚିଗଲୁ ।

ବାପରେ ବାପ ! ଯେଉଁଠି ଦେଖ ସେଠି ଖାଲି ଭିଡ଼ ହିଁ ଭିଡ଼ । ସଡ଼କର ପାଖେ ପାଖେ ବହୁତ ସାରା ଦୋକାନ ଥିଲା । ଆମେ ସବୁ ଆଶ୍ଚର୍ଯ୍ୟ ଚକିତ ଭାବରେ ସବୁ ଦେଖି ଦେଖି ପଡ଼ିଆକୁ ଗଲୁ । ସେଠାରେ ତମ୍ବୁ ଲାଗିଲା । ସେଠାରେ ରହିବାର ସବୁ ବ୍ୟବସ୍ଥା ହେଲା । ସେହିଦିନ ସମସ୍ତଙ୍କୁ ଅଲଗା ଅଲଗା ଦାୟିତ୍ୱରେ ରଖାଗଲା ।

ରାତ୍ରିର ଭୋଜନ ସମୟରେ କମଳା କହିଲା, ‘‘ତୁମେ ସବୁ ଜାଣିଛ ମୋତେ କେଉଁ କାମ କରିବାକୁ ପଡ଼ିବ ? ହସ୍‌ପିଟାଲରେ ମୋତେ ଡାକ୍ତର ଙ୍କୁ ସାହାଯ୍ୟ କରିବାକୁ ପଡ଼ିବ ।’’

ରହିମ୍ କହିଲା, ‘ମୁଁ ତ ଯାତାୟାତ ପୋଲିସ କୁ ସାହାଯ୍ୟ କରିବି ।’’ ମୁଁ କହିଲି, ‘‘ନୂଆ ଲୋକଙ୍କୁ ରାସ୍ତା ଦେଖାଇବା ମୋର କାମ ଅଟେ ।’’

ତା’ ପରଦିନ ସକାଳେ ଆମେ ସମସ୍ତେ ଶୀଘ୍ର ଉଠିଗଲୁ । ଖାଦ୍ୟ ପଦାର୍ଥର ପ୍ୟାକେଟ୍ ନେଇ ନିଜ ନିଜର କର୍ମ ସ୍ଥାନରେ ପହଞ୍ଚିଗଲୁ । ସାରାଦିନ ଖୁବ୍ ବ୍ୟସ୍ତତା ଭିତରେ କଟିଗଲା ।

ସଂଧ୍ୟା ସମୟରେ ମୁଁ ଆଉ ରହିମ କଥାବାର୍ତ୍ତା କରି କରି ଶିବିରକୁ ଫେରୁଥିଲୁ । ଆଗରେ ଜଣେ ବୃଦ୍ଧା ବଡ କଷ୍ଟରେ ମନ୍ଦିରର ପାହାଚ ଚଢୁଥିଲେ । ମୁଁ ତାଙ୍କର ହାତ ଧରି ତାଙ୍କୁ ପାହାଚ ଚଢିବାରେ ସାହାଯ୍ୟ କଲି । ରହିମ ତାଙ୍କର ସବୁ ଜିନିଷପତ୍ର ଉଠାଇ କରି ଆଣିଲା ।

ବୃଦ୍ଧା ଜଣଙ୍କୁ ମନ୍ଦିରରେ ପହଞ୍ଚାଇ ଆମେ ଦୁହେଁ ତଳକୁ ଫେରୁଥିଲୁ । ‘‘ଆ.. ବଞ୍ଚାଅ... ବଞ୍ଚାଅ..’’ କାହାର ଚିତ୍କାର କରିବାର ଶବ୍ଦ ଶୁଭିଲା । ଆମେ ଦୁହେଁ ଆଶ୍ଚର୍ଯ୍ୟ ହୋଇଗଲୁ । ଦୁହେଁ ଦୌଡ଼ିକରି ଗଲୁ । ଦେଖିଲୁ ଗୋଟିଏ ପିଲା ଖେଳୁ ଖେଳୁ ପୋଖରୀରେ ପଡ଼ିଯାଇଛି ।

ରହିମକୁ ପହଁରିବା ଆସୁଥିଲା । ଗୋଟିଏ ମୁହୂର୍ତ୍ତ ସମୟ ନଷ୍ଟ ନ କରି ସେ ପୋଖରୀକୁ ଡେଇଁ ପଡିଲା । ଖୁବ୍ ଶୀଘ୍ର ଶୀଘ୍ର ପହଁରି ପହଁରି ସେ ପିଲାଟିକୁ ଧରିନେଲା । ତାକୁ କୂଳକୁ ନେଇ ଆସିଲା । ଆମକୁ ଯେମିତି ଶିଖା ଯାଇଥିଲା ସେହି ପ୍ରକାରରେ ପିଲାଟିକୁ ଶୁଆଇଦେଲୁ । ତାର ପିଠିକୁ ଦବାଇବାରେ ଲାଗିଲୁ ।



# ଚିତ୍ରକାର ୟାଙ୍ଗ

ବହୁତ ସମୟ ଆଗରୁ ଚୀନ୍‌ରେ ୟାଙ୍ଗ ନାମକ ଏକ ବାଳକ ତା'ମାମୁଁ ସାଥିରେ ରହୁଥିଲା । ତା'ର ମାମୁଁ ଜଣେ ପ୍ରସିଦ୍ଧ ଚିତ୍ରକାର ଥିଲେ । ମାମୁଁ ଯେବେ ଚିତ୍ର କରୁଥିଲେ ୟାଙ୍ଗ ଘଣ୍ଟା ଘଣ୍ଟା ଧରି ତାଙ୍କ ପାଖରେ ବସି ରହୁଥିଲା । ତାଙ୍କର ଚିତ୍ରକାରିତାକୁ ବହୁତ ଧ୍ୟାନରେ ଦେଖୁଥିଲା ।

ଚିତ୍ରକଳାରେ ତା'ର ରୁଚିକୁ ତା'ମାମୁଁ ଜାଣିପାରିଲେ । ସେ ତାକୁବି ଚିତ୍ର ବନାଇବା ପାଇଁ ପ୍ରୋତ୍ସାହିତ କଲେ । ଆଉ ତାର ଚିତ୍ରକୁ ନିରୀକ୍ଷଣ ବି କରୁଥିଲେ ।



ବହୁତ ଉଚ୍ଚାରେ ବନିଥିବା ଘରୁ ସୁନ୍ଦର ଦୃଶ୍ୟ ଦେଖା ଯାଉ ଥିଲା । ଏହିସବୁ ଦୃଶ୍ୟ ଦେଖି ୟାଙ୍ଗ ବହୁତ ଖୁସି ହେଉଥିଲା । ପ୍ରକୃତିର ସୁନ୍ଦର ଚିତ୍ର ବନାଇ ରଂଗ ଦେଉଥିବା ବେଳେ ହଠାତ୍ କାହାର ଚିତ୍କାର ଶୁଭିଲା । ''ବାଘ! ବାଘ!'' ଚିତ୍କାର କରି ଜଣେ ଲୋକ ଖୁବ୍ ଜୋର୍‌ରେ ଦୌଡ଼ି ଦୌଡ଼ି ଆସୁଥିଲା ।

'ବାଘ ମୁଁହରୁ କେମିତି ବଞ୍ଚିବି?' ୟାଙ୍ଗ କୁ ଜଲ୍‌ଦି ଏକ ଉପାୟ ମନରେ ଆସିଲା । ନିଜେ ବନାଇଥିବା ଘୁଷୁରୀର ଚିତ୍ରକୁ ଗଛବୃକ୍ଷର ଝାଡ଼ି ଆଗରେ ରଖିଦେଲା । ତା'ପରେ ଦୁହେଁ ମିଶି ସେଠାରୁ ଦୌଡ଼ି ପଳାଇଗଲେ ।

ପଛେ ପଛେ ଆସୁଥିବା ବାଘର ନଜର ଘୁଷୁରୀର ଚିତ୍ରଉପରେ ପଡ଼ିଲା । ତା'ର ଧ୍ୟାନ ଘୁଷୁରୀର ଚିତ୍ର ତରଫକୁଗଲା । ସେ ଚିତ୍ରକୁ ଘୁରି ଘୁରି ଦେଖି ଗର୍ଜନ କରିବାରେ ଲାଗିଲା । ଏହି ସମୟ ଭିତରେ ୟାଙ୍ଗ ଆଉ ତାର ସାଥି ଗଛ ଉପରେ ବନିଥିବା ଘର ଭିତରକୁ ଚାଲିଗଲେ ।

- ଚୀନ୍ ର କଥା



हिन्दी से अनुवादः बिजय गोपाल ओझा


कथा झरना
चित्रांकनः एस.पी. राजू


अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



ଦିନେ ମାମୁଁ ତାକୁ କହିଲେ, ‘‘ତୁମର ଚିତ୍ରକାରୀତା ବହୁତ ଭଲ ଆଉ ଉନ୍ନତ । ଆଉ ତୁମେ ତ ମୋ ଅପେକ୍ଷା ବି ଭଲ ଚିତ୍ର ବନାଇ ପାରୁଛ । ମୁଁ ଚାହୁଁଛି ତୁମ ଦ୍ୱାରା ବନିଥିବା ଚିତ୍ରର ପ୍ରଦର୍ଶନୀ ଗାଁରେ ଲଗାଇବି । ଯାହାଦ୍ୱାରା ସମସ୍ତେ ତୁମର କଳା ଦେଖିପାରିବେ ।’’

ୟାଙ୍ଗର ମାମୁଁ ସମସ୍ତଙ୍କୁ ନିମନ୍ତ୍ରଣ କଲେ । ୟାଙ୍ଗର ଚିତ୍ର ଦେଖିବାକୁ ବହୁତ ଲୋକମାନେ ଆସିଲେ । ଚିତ୍ର ଦେଖି ସମସ୍ତେ ବହୁତ ଖୁସିହେଲେ । ୟାଙ୍ଗର ପ୍ରଶଂସା କରି କହିଲେ, ‘‘ତୁମର ସବୁ ଚିତ୍ର ଗୁଡିକ ଜୀବନ୍ତ ଲାଗେ । ତୁମ ଦ୍ୱାରା ବନିଥିବା ମହୁମାଛିର ଫେଣା ଆଉ ଫୁଲର ଚିତ୍ର ଦେଖି ମହୁମାଛି ବି ଆସିଯିବେ । ପକ୍ଷୀମାନେ ବି ଧୋକା ଖାଇଯିବେ ।’’

ଦିନେ ମାମୁଁ କହିଲେ ୟାଙ୍ଗ, ‘‘ତୁମର ସବୁ ଚିତ୍ରଗୁଡ଼ିକ ନେଇ ଦୂର ଗାଁରେ ରହୁଥିବା ମୋର ଏକ ମିତ୍ରକୁ ଦେଖାଅ । ଏ ରହିଲା ତାଙ୍କ ଠିକଣା ।’’ ୟାଙ୍ଗ ନିଜର ମାମୁଁଙ୍କୁ ଛାଡ଼ିକରି ଯିବାକୁ ଚାହୁଁନ ଥିଲା । ହେଲେ ମାମୁଁଙ୍କର ଆଜ୍ଞା ମାନି ଯିବାକୁ ପଡ଼ିଲା ।

ରାସ୍ତାରେ ତାକୁ ଘନ ଜଙ୍ଗଲ ପାରି କରିବାକୁ ପଡ଼ିଲା । ଜଙ୍ଗଲର ପରିବେଶ, ବୃକ୍ଷଲତା, ପଶୁ, ପକ୍ଷୀ ସମସ୍ତେ ତା ମନ କୁ ମୋହିତ କରିଦେଲେ । ୟାଙ୍ଗ ଆଉ ରହି ପାରିଲେନି, ଶେଷରେ ସେ ସେଠାରେ ଛିଡ଼ାହୋଇ ଚିତ୍ର ବନାଇବାରେ ଲାଗିଲା । ରାତ୍ରିକାଳରେ ସେ ଗଛ ଉପରେ ବନିଥିବା ଘରେ ଶୋଇପଡୁଥିଲା । ଏହିପରି କେତେ ଦିନ ବିତିଗଲା ।

ତା'ପରେ ତେନାଲିରାମ ଜାଦୁକର କୁ କହିଲା, ''ମୁଁ ଯେଉଁ କାମ ବର୍ତ୍ତମାନ କଲି ସେହି କାମ କୁ ଦୁଇ ଆଖି ଖୋଲି ଆପଣକୁ କରିବାକୁ ପଡିବ ।'' ଜାଦୁକର ଏବେ ସଂକଟରେ ପଡ଼ିଗଲା । ଲାଜରେ ମୁଣ୍ଡ ନୁଆଁଇ ସେଠାରୁ ଫେରିଗଲା ।

ରାଜା ଶାନ୍ତିରେ ନିଃଶ୍ୱାସ ନେଲେ ଏବଂ କହିଲେ ''ଭଲ ହେଲା ! ତେନାଲିରାମ ତ ସବୁ ସମସ୍ୟାର ସମାଧାନ କରିଦେଲା ।'' ସେ ତେନାଲିରାମଙ୍କୁ ବହୁତ ସାରା ପୁରସ୍କାର ଦେଇ କରି ସମ୍ମାନିତ କଲେ ।

हिन्दी से अनुवादः बिजय गोपाल ओझा






अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust

# ତେନାଲି ରାମ ଓ ଜାଦୁକର



ଦିନେ ବିଜୟ ନଗରରେ ଏକ ଜାଦୁକର ଆସିଥିଲା । ସେ ରାଜମହଲରେ ବିଭିନ୍ନ ପ୍ରକାରର ଜାଦୁ ଦେଖାଇଲା । ଗୋଟିଏ ଖାଲି ଟୋକେଇକୁ ଓଲଟାଇ ରଖିଦେଲା । ତା'ପରକ୍ଷଣରେ ତା'କୁ ଉଠାଇଲା । ଚମତ୍କାର ! ସେ ଜାଗାରେ ଗୋଟିଏ ଛୋଟ ଆମ୍ବ ଗଛ ଥିଲା । ସବୁ ଲୋକମାନେ ତାଳି ବଜାଇ ତାର ପ୍ରଶଂସା କଲେ ।

ତା'ପର କାର୍ଯ୍ୟକ୍ରମରେ ସେ ଏକମୁଠା ପଥର କଙ୍କର ନେଲା । ଏକ କ୍ଷଣରେ ସେ ସୁନାର ମୁଦ୍ରାରେ ବଦଳାଇ ଦେଲା । ଖାଲି ଏତିକିବି ନୁହେଁ, ଏକ କ୍ଷଣରେ ରାଜାଙ୍କର ମୁଦି ନିଜ ଆଙ୍ଗୁଳିରେ ପିନ୍ଧିବାର ଦେଖାଇଲା ।

ତା'ପରେ ପୁଣି ଏକ ଖାଲି ପିଞ୍ଜରାକୁ ଖୋଲିଲା । ବାଃ, ଭାଇ ! ତା ଭିତରୁ ଗୋଟିଏ ପାରା ଉଡିଗଲା । ତା'ର ଚତୁରତାକୁ ଦେଖି ରାଜା ବହୁତ ପ୍ରସନ୍ନ ହେଲେ ଆଉ ତାକୁ ରୋପ୍ୟ ମୁଦ୍ରାରେ ଭରା ଏକ ଥଳୀ ପୁରସ୍କାର ଦେଲେ ।

କିନ୍ତୁ ଜାଦୁକର ତ ସେଠାକୁ ଆଉ ଏକ ଅନ୍ୟକାମରେ ଆସିଥିଲା । ତା'ର ଉଦ୍ଦେଶ୍ୟ ଥିଲା ହାସ୍ୟ କବି ତେନାଲିରାମ କୁ ଅପମାନିତ କରିବା । ସେ ରାଜମହଲରେ ସମସ୍ତଙ୍କ ଆଗରେ ଏକ ସର୍ତ୍ତ ରଖିଲା, ''କ'ଣ ଆପଣମାନଙ୍କ ଭିତରୁ କିଏ ଜଣେ ମୋତେ ଜିତିପାରିବ ? ଯିଏ ଜିତିବ, ମୁଁ ତାକୁ ସମସ୍ତ ପୁରସ୍କାର ଦେଇଦେବି । ଆଉ ଯଦି ମୁଁ ଜିତିଯାଏ ତେବେ ଆପଣମାନେ ତେନାଲିରାମଙ୍କୁ ମୋତେ ସମର୍ପି ଦେବେ ।''

ଜାଦୁକର ସାଥିରେ ପ୍ରତିଦ୍ୱନ୍ଦିତା କରିବାକୁ କିଏ ଜଣେ ବି ଆଗକୁ ଆସିଲେନି । ରାଜା ଖୁବ୍ ଚିନ୍ତିତ ହେବାକୁ ଲାଗିଲେ ।

ତେନାଲିରାମ ମନେ ମନେ ଭାବିଲା, 'ଏହାର ଏତେ ସାହସ ! ଏ ଜାଦୁକର ର ଗର୍ବକୁ ଯେମିତି ହେଲେ ଚୁର୍ ଚୁର୍ କରିବାକୁ ପଡିବ ।'

ତେନାଲିରାମ ଆଗେଇଆସି କହିଲା, ''ହେ ଜାଦୁକର ! ଆପଣ ତ ଆମ୍ଭମାନଙ୍କୁ ବହୁତ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଜାଦୁ ଦେଖାଇଲେ । ତଥାପି ମୁଁ ଆପଣଙ୍କ ମୁକାବିଲା କରିବାକୁ ପ୍ରସ୍ତୁତ । ହେଲେ ମୋର ଏକ ସର୍ତ୍ତ ଅଛି । ମୁଁ ଯେଉଁ କାମ ଆଖି ବନ୍ଦ କରି କରିବି, ସେହି କାମକୁ ଆପଣଙ୍କୁ ଆଖି ଖୋଲି କରି କରିବାକୁ ପଡ଼ିବ ।''

ଜାଦୁକର ଶୀଘ୍ର ରାଜି ହୋଇଗଲା । ତେନାଲିରାମ ପାଖରେ ଥିବା ଫୁଲକୁଣ୍ଡରୁ ମୁଠାଏ ମାଟି ନେଲା । ନିଜ ଆଖି ବନ୍ଦ କରି ଆଖି ଉପରେ ସେହି ମାଟିକୁ ଢାଳିବାରେ ଲାଗିଲା । ତା'ପରେ କପଡ଼ା ନେଇ ମାଟିକୁ ପୋଛିଦେଲା ।



ମାଙ୍କଡ଼, ହରିଣ, ମୟୁର, ମାଛରଙ୍କା ପକ୍ଷୀ ସମସ୍ତେ ମିଶି ଗଛକୁ ହଟାଇବା ପାଇଁ ଚେଷ୍ଟା କଲେ । କିନ୍ତୁ ଅସଫଳ ହେଲେ ।

‘‘ଆରେ ! ବାଘକୁ ଯେ କୌଣସି ପ୍ରକାରରେ ବଞ୍ଚାଇବାକୁ ପଡ଼ିବ ।’’ ସବୁ ପଶୁମାନେ ଅପ୍ପୁ କୁ ଡାକି ଆଣିଲେ । ଅପ୍ପୁ ଗଛକୁ ହଟାଇବାକୁ ଚେଷ୍ଟା କଲା । ତିନିଦିନ ହେଲା କିଛି ଖାଇନଥିଲା ତ ! ଗଛକୁ ହଟାଇ ପାରିଲାନି ।

ତା’ର ବନ୍ଧୁମାନେ କହିଲେ, ‘‘ନିଅ ! ଆଖୁ ଖାଇ କରି ହଟାଇବାକୁ ଚେଷ୍ଟା କର ।’’ ‘‘ହଁ ! ଏ ମୋର ଶକ୍ତି ଅଟେ,’’ କହୁ କହୁ ଅପ୍ପୁ ସବୁ ଆଖୁ ଶୀଘ୍ର ଶୀଘ୍ର ଖାଇନେଲା । ବାଶ୍ ! ଖୁବ୍ ଉତ୍ସାହର ସହିତ ଏକକ୍ଷଣ ରେ ଗଛକୁ ହଟାଇଦେଲା । ସବୁ ପଶୁମାନେ ଖୁସିରେ କହିଉଠିଲେ, ‘‘ଏବେ ବୁଝ୍, ତୁମେ ସବୁଠାରୁ ବଳବାନ୍ ଅଟ ।’’ ଅପ୍ପୁ ନିଜ ଶୁଣ୍ଢ କୁ ଉଠାଇ ଖୁସିରେ ଗର୍ଜନ କଲା ।

- ପାରୋ ଆନନ୍ଦଙ୍କ କାହାଣୀ ଉପରେ ଆଧାରିତ

हिन्दी से अनुवादः बिनता ओझा





# ଅପ୍ପୁର ଚିନ୍ତାରକାରଣ

ଅପ୍ପୁ ଗୋଟିଏ ଛୋଟ ହାତୀ ଥିଲା । ଦିନେ ସେ ବହୁତ ଉଦାସ ହୋଇ ବସିଥିଲା । ବାହାରକୁ ଖେଳିବାକୁ ଯାଇ ନ ଥିଲା । ସବୁ ମିତ୍ରମାନେ ବ୍ୟସ୍ତ ବିବ୍ରତ ! ତେବେ ଅପ୍ପୁର କଣ ହୋଇଛି ? ମାଛରଙ୍କା ପକ୍ଷୀ ଟି କାରଣ ଜାଣିବା ପାଇଁ ବହୁତ ଚେଷ୍ଟା କଲା, ‘‘ତୁମର ଚିନ୍ତା କଣ ? ମୋତେ କୁହ ।’’ କିନ୍ତୁ ଅପ୍ପୁ ଚୁପ୍ ରହିଲା ।

ମାଛରଙ୍କା ପକ୍ଷୀଟି କହିଲା, ‘‘ଆହା ! ମୋତେ ଜଣା ଅଛି । ନିଜର ଲମ୍ବା ଶୁଣ୍ଢ ପାଇଁ ତୁମେ ଲଜ୍ଜିତ ଅଟ ନା?’’



ଅପ୍ପୁ ତତ୍‌କ୍ଷଣାତ୍ ଉତ୍ତର ଦେଲା, ‘‘ନାହିଁ ! ନାହିଁ ! ମୋତେ ମୋର ଶୁଣ୍ଢଟି ବହୁତ ପସନ୍ଦ । ଏହାର ସହାୟତାରେ ମୁଁ କେତେ କାମ କରେ ।’’




अमेरिका इंडिया फाउंडेशन के लिए एकलव्य द्वारा प्रकाशित
Chatnath Trust

ସେହିକ୍ଷଣି ମାଙ୍କଡ଼ଟି କହିଲା, ''ତେବେ କଣ ତୁମେ ନିଜର ଛୋଟ ଲାଞ୍ଜ ପାଇଁ ଅବଶୋଷ କର ? ମୋ ପରି ତୁମେ ଡାଳରେ ଝୁଲି ପାର ନାହିଁ, କଣ ତୁମରି ସମସ୍ୟା ଏହା ଅଟେ ?''

ଅପ୍ପୁ କହିଲା, ''ନାହିଁ ! ନାହିଁ ! ମୋର ଲାଞ୍ଜ ଟି ଛୋଟ ସତ କିନ୍ତୁ ବହୁତ କାମରେ ଆସେ ।''

ହରିଣଟି କହିଲା, ''ପୁଣି କ'ଣ ତୁମରି ସମସ୍ୟାର କାରଣ ତୁମର ମୋଟା ମୋଟା ଗୋଡ ଅଟେ କି ? ତୁମେ କଣ ଏହି କଥା ଭାବ କି ତାହା ମୋ ଗୋଡ ପରି ପତଳା ଏବଂ ସୁନ୍ଦର କାହିଁକି ନୁହେଁ ?''

ଅପ୍ପୁ କହିଲା, ''ଏମିତି କିଛି କଥା ନୁହେଁ । ମୋତେ ନିଜର ଗୋଡ ବହୁତ ସୁନ୍ଦର ଲାଗେ ।''

ମୟୁରଟି ପଚାରିଲା, ''ଆଚ୍ଛା ତୁମରି ପାଉଁଶିଆ ରଂଗ କଣ ତୁମର ପସନ୍ଦ ନୁହେଁ ? ମୋ ଶରୀର ପରି ରଂଗରେ ସେ ସଜ୍ଜିତ ନୁହେଁ । ଏହି କଥା କଣ ତୁମର ଦୁଃଖର କାରଣ ଅଟେ କି ?''

ଅପ୍ପୁ ମୁଣ୍ଡ ହଲାଇଲା, ''ନୁହେଁ ! ମୋର ଶରୀର ର ରଂଗ ପାଇଁ ମୋର କିଛି ଅବଶୋଷ ନାହିଁ । ଏ ପାଉଁଶିଆ ରଙ୍ଗ ତ ମୋତେ ଶିକାରୀ ମାନଙ୍କ ଠାରୁ ରକ୍ଷା କରେ ।''

ମାଙ୍କଡ଼ଟି କହିଲା, ''ଏମିତି କଥା ଯଦି ତେବେ ବାହାରକୁ ଆସ । ଏଠାରେ ବହୁତ ସାରା ଆଖୁ ପଡ଼ି ଅଛି । ମିଳିମିଶି ଖାଇବା ।''

ଅପ୍ପୁ କାନ୍ଦିବାରେ ଲାଗିଲା, ''ମୁଁ ବହୁତ ମୋଟା ଅଟେ । ମୋତେ ଖାଦ୍ୟ ଦରକାର ନାହିଁ ।''

ଏକଥା ଶୁଣି ହରିଣଟି କହିଲା, ''ଆରେ ! ଏଇଟା କଣ ତୁମର ସମସ୍ୟା ? ହାତୀ ତ ବଡ଼ ଏବଂ ବଳବାନ୍ ହେବା ଦରକାର । ତୁମେ ତ ମୋଟା ନୁହଁ ।''

''ମୁଁ କ'ଣ ମୋଟା ନୁହେଁ କି ? ତିନିଦିନ ହେଲା ମୁଁ କିଛି ଖାଇନାହିଁ । ତଥାପି ମୁଁ ପତଳା ହେଲିନି,'' ଅପ୍ପୁ ଉଦାସ ହୋଇ କହିଲା ।

ହଠାତ୍ ଏକ ଶବ୍ଦ ଆସିଲା, ''ବଞ୍ଚାଅ ! ବଞ୍ଚାଅ !'' ସମସ୍ତେ ଶବ୍ଦ ଆସୁଥିବା ଦିଗକୁ ଦୌଡ଼ିଗଲେ । ସେଠାରେ ବାଘ ଉପରେ ଗୋଟିଏ ଗଛ ପଡ଼ିଯାଇଥିଲା । ସେ ଯନ୍ତ୍ରଣାରେ ଚିତ୍କାର କରୁଥିଲା ।



କନ୍ନମ୍ମା ଆଉ ଚେଇଁ ପାରିଲାନି । ସେ ସ୍ୱପ୍ନରେ ଦେଖିଲା, ଏକ ରାକ୍ଷସ ଚାନ୍ଦ କୁ ଚୋରି କରି ନେଇଗଲା । ଚାନ୍ଦ କୁଆଡ଼େ ଚାଲି ଗଲା ? ବୋଧେ ଆସନ୍ତା ରାତ୍ରିରେ ଆସିବ । ନୁହେଁ ! ଆସନ୍ତା ରାତି ଚାନ୍ଦ ଆସିଲାନି । କ'ଣ ସତରେ ଚାନ୍ଦ ଚୋରି ହୋଇଗଲା ?

ତାଙ୍କର ବିଶ୍ୱାସ ଥିଲା କି ଯିଏ ବି ଚାନ୍ଦକୁ ଚୋରି କରିନେଇଛି, ସେ ଅବଶ୍ୟ ଫେରାଇଦେବ । କ'ଣ ଏତେ ବଡ଼ ଚାନ୍ଦକୁ ନେଇ କିଏ ବୁଲିପାରିବ ? ଆଉ ଏବେ ନ ଶୋଇ ଜାଗିବାର କିଛି ଲାଭ ନାହିଁ । ମାଆ କହିଲେ, ''କାଲି ସକାଳେ ବାପା ଫେରିଆସିବେ ।'' ସେହି ରାତ୍ରିରେ କନ୍ନମ୍ମା ସ୍ୱପ୍ନ ଦେଖିଲା । ତା' ବାପା ଜାଦୁର ଛଡ଼ି ବୁଲାଇ ଚାନ୍ଦକୁ ରାକ୍ଷସ କବଳରୁ ଛଡ଼ାଇ ନେଇ ଆସିଲେ ।

ପରଦିନ ସକାଳେ ସେ ଅଧା ନିଦରୁ ଉଠି ବାହାରକୁ ଆସିଲା । ସେ ଆକାଶକୁ ଚାହିଁଲା ଏବଂ ଦେଖିଲା । ଅଧା ଚାନ୍ଦ ! ସେ ବଡ଼ ପାଟିରେ କହି ଉଠିଲା, ''ମାଁ ! ଚାନ୍ଦ ଫେରିଆସିଲା, ସେ ଏତେ ଅଳସୁଆ ଯେ ସକାଳେ ହିଁ ଆସିଲା ।''

ଚାନ୍ଦ ମନ୍ଦିର ପାଖରେ ନ ଥିଲା ବରଂ କନ୍ନମ୍ମା ର ମୁଣ୍ଡ ଉପରେ ଥିଲା । ଦୂରରୁ ସେ ତା' ବାପାଙ୍କୁ ଆସିବାର ଦେଖିଲା । କନ୍ନମ୍ମାର ମନ ଖୁସିରେ ନାଚି ଉଠିଲା । ଚାନ୍ଦ ଆଜି ମିଳିଗଲା । ତା' ବାପା ବି ଆସିଗଲେ । ତା' ର କାନ୍ଧ ଉପରେ ବନିଥିବା କ୍ଷେତ୍ର ଏବେ ଭରିଯିବ । କାହିଁକିନା ସେ ଅଳସୁଆ ଚାନ୍ଦ କୁ ଏବେ ସକାଳେ ଖୋଜିବ ।

- ନିରୁପମା ରାଘବନ

हिन्दी से अनुवादः बिजय गोपाल ओझा





कथा झरना
चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



# ଚାନ୍ଦ କୁଆଡ଼େ ଉଭେଇଗଲା

କନ୍ନମ୍ମା ନିଜ ମୁହଁ ବୁଲାଇନେଲା । ତା ଆଖିରୁ ଲୁହ ଝରିବାକୁ ଯାଉଥିଲା । ତେବେ ତା' ବାପା ତାକୁ କହିଲେ, ''ତୁ ମନ ଦୁଃଖ କରନା । ମୁଁ ତୋର ଜନ୍ମଦିନ ପୂର୍ବରୁ ହିଁ ଫେରିଆସିବି ।''

କନ୍ନମ୍ମା ତଥାପି ବୁଲିକରି ଦେଖିଲାନି । ''ଏପଟେ ଦେଖ ! ମନ୍ଦିର ଶିଖର ଉପରେ ପୂର୍ଣ୍ଣଚନ୍ଦ୍ରମା ଚମକୁ ଅଛି । ଧୀରେ ଧୀରେ ତାର ଗୋଲାଇ କମ୍ ହୋଇଯିବ । ପୁଣି ଅଧାଚନ୍ଦ୍ରମା ହୋଇ ସେ ଉଭେଇଯିବ । ଧୀରେ ଧୀରେ ସେ ପୁଣି ନିଜର ଗୋଲ ଆକାର ଫେରିପାଇବ । ଯେବେ ଚନ୍ଦ୍ରମା ଦ୍ୱିତୀୟଥର ପାଇଁ ପେଣ୍ଡୁ ପରି ଗୋଲ ହୋଇଯିବ ସେହିଦିନ ତୁମର ଜନ୍ମଦିନ ହେବ ଏବଂ ସେତେବେଳେ ମୁଁ ବି ଆସିଯିବି,'' ତା' ବାପା ତା'କୁ ବୁଝାଇଲେ ।



କଥାତ ବହୁତ ମଜାଦାର, ସେ ବୁଲିକରି ଚାନ୍ଦକୁ ଦେଖିବାକୁ ଲାଗିଲା । ତା'ର କିରଣରେ କନକ୍ଷାର ଲୁହ ଚମକିବାକୁ ଲାଗିଲା ।

ବାପା ତା'ର ମନର ପରିବର୍ତ୍ତନକୁ ଦେଖି କହିଲେ, ''କଣ ତୋତେ ଜଣା ଅଛି ? ଲୋକମାନେ ଚାନ୍ଦର ଆକାର ଦେଖି ଆଉ ବୁଝି କ୍ୟାଲେଣ୍ଡର ବନାଇଥାନ୍ତି ।''

ଉତ୍ସାହ ସହିତ କଥାକୁ ଆଗେ ବଢ଼ାଇ ସେ କହିଲେ, ''ତୁମେ କାହିଁକି କାନ୍ଥ ଉପରେ ବର୍ଗାକାର କ୍ଷେତ୍ର ବନାଇ ଚାନ୍ଦର ଆକାରର ପରିବର୍ତ୍ତନ ଖବର ରଖୁନାହଁ ? ଦେଖୁ ଦେଖୁ ମୁଁ ବି ଫେରିକରି ଆସିଯିବି ।''

କନକ୍ଷାର ଆଖିରେ ଏକ ନୂଆ ଅନୁଭବର ଅପେକ୍ଷା ଥିଲା । ସେ ମନ୍ଦ ମନ୍ଦ ହସିଲା । ସେତିକିବେଳେ ଷ୍ଟେସନ ରେ ରେଳଗାଡ଼ି ଆସି ପହଞ୍ଚିଗଲା । ସେ ତା' ବାପାଙ୍କୁ ଖୁସି ଖୁସି ବିଦା କଲା ।

ତା' ପରଦିନ ସକାଳେ କନକ୍ଷା ବ୍ୟସ୍ତ ଥିଲା । କାନ୍ଥ ଉପରେ ବର୍ଗାକାର କ୍ଷେତ୍ର ଟିଏ ବନାଇବାର ଥିଲା । ପାଖ ଘରର ତମ୍ମି ଖୁସି ଖୁସି ତାକୁ ସାହାଯ୍ୟ କରିବାକୁ ଆସିଲା ।



'କେବେ ଅନ୍ଧାର ହେବ,' ସେ ବିବ୍ରତ ହୋଇ ଅପେକ୍ଷା କରିବାରେ ଲାଗିଲା । ବାରମ୍ବାର ମନ୍ଦିରର ଶିଖରକୁ ଦେଖୁଥିଲା । ବହୁତ ସମୟ ଡେରି କଲାପରେ ଚାନ୍ଦ ଉଦୟହେଲେ ।

'ଆରେ ଏ କ'ଣ ! ଚାନ୍ଦ ତ ଏବେ ବି ଗୋଲ ଥିଲା । କ'ଣ ବାପା ମୋତେ ବୋକା ବନାଇଲେ ?' ସେ ଦ୍ୱିତୀୟଥର ଧ୍ୟାନରେ ଦେଖିଲା । ବାପା ଠିକ୍ କହିଥିଲେ । ଚାନ୍ଦ ଗୋଲ ଥିଲା, କିନ୍ତୁ ପୂରା ଗୋଲ ନୁହେଁ ।

ସେ କାନ୍ଥରେ ତା'ର ଚିତ୍ରବନାଇବା ପାଇଁ ଗଲା, 'କିନ୍ତୁ ଚାନ୍ଦ କେଉଁପଟେ ଗୋଲ ନ ଥିଲା?' ସେ ଭୁଲି ଯାଇଥିଲା । ପୁଣି ଦେଖିକରି ଆସିଲା । ଏଥର ପୂରା ଭଲ ଭାବେ ମନେରଖି ଚାନ୍ଦ ଆକାରର ଚିତ୍ର ବନାଇଲା ।

ପରଦିନ ସଂଧ୍ୟାବେଳେ ଚାନ୍ଦକୁ ଦେଖିବାକୁ ଭୁଲିଗଲା । ତମ୍ମି ଦୌଡ଼ି ଦୌଡ଼ି ଆସି କହିଲା ଚାନ୍ଦର ଆକାର ଆଉ ଟିକେ ଛୋଟ ହୋଇଯାଇଛି । ଓଃ, ତା'ର ଏବେ ମନେ ପଡ଼ିଲା ।

ତୃତୀୟ ଦିନ ତାକୁ ଶିଖର ପାଖରେ ଚାନ୍ଦଦିଶିଲାନି । ସେ ଭାବନାରେ ପଡ଼ିଗଲା । ଶୋଇବା ପୂର୍ବରୁ ସେ ଆଉ ଥରେ ପୁଣି ଦେଖିଲା । ଏବେ ତାକୁ ଚାନ୍ଦ ଦେଖାଗଲା । ଗତ ରାତି ର ଚାନ୍ଦଠାରୁ ବି ଆକାରରେ ଛୋଟ ଥିଲା । କାନ୍ଥଉପରେ ଚାନ୍ଦର କ୍ୟାଲେଣ୍ଡର ଧୀରେ ଧୀରେ ଭରିବାରେ ଲାଗିଲା ।

ଚତୁର୍ଥ ଏବଂ ପଞ୍ଚମ ଦିନ ବର୍ଷା ହେବାରେ ଲାଗିଲା । ଅବଶୋଷ ! ଦୁଇଟା କ୍ଷେତ୍ରରେ ଖାଲି ଜାଗା ଛାଡିବାକୁ ପଡ଼ିଲା । ଷଷ୍ଠୀଦିନ ଆକାଶ ଖୁବ୍ ସଫା ଦେଖାଗଲା । ଶହ ଶହ ତାରା ଝିଲ୍‌ମିଲ୍ କରୁଥିଲେ । ଚାନ୍ଦର କାହିଁ କେଉଁଠି ଖବର ନ ଥିଲା ।



ମାଛରଙ୍କା ବି ଏକ ବହୁତ ହୁସିଆର୍ ଏବଂ ସୁନ୍ଦର ପକ୍ଷୀ, ମାଛ ଧରିବାରେ ବହୁତ ନିପୁଣ ! ନାଳ ପୋଖରୀ ଓ ନଦୀ କୂଳରେ ବସିକରି ପଲକ ନ ଝପକାଇ ପାଣିକୁ ଦେଖୁଥାଏ । ସୁଯୋଗ ଉଣ୍ଡି ଝଟ୍ କରି ପାଣିରେ ବୁଡି ମାଛକୁ ଧରି ଉଡ଼ିଯାଏ ।

ମାଛରଙ୍କା ପକ୍ଷୀ ଟି ନଦୀ କୂଳରେ ମାଟିରେ ସୁଡଙ୍ଗ ବନାଇ ନିଜର ବସା ତିଆରି କରେ । ତାର ପ୍ରବେଶ ଦ୍ୱାର କୁ ଶୁଖିଲା ଘାସକୁଟା ଦ୍ୱାରା ଢାଙ୍କି ଦେଇଥାଏ ।

ପକ୍ଷୀମାନଙ୍କ ବିଷୟରେ କେତେ ପ୍ରକାରର ରୋଚକ କଥା ଅଛି । ତାଙ୍କୁ ଧ୍ୟାନ ପୂର୍ବକ ଦେଖି ସେମାନଙ୍କ ବିଷୟରେ ଆମେ ଆହୁରି ଅନେକ କଥା ଜାଣିପାରିବା ।



हिन्दी से अनुवादः बिनता ओझा



कथा झरना

चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust





# ଚଢ଼େଇର ବସା

ଆଖ ପାଖର ବାତାବରଣରେ ଆମେ ଅନେକ ପକ୍ଷୀ ମାନଙ୍କୁ ଦେଖିଥାଉଁ । ସେମାନଙ୍କର ବସା ଭିନ୍ନ-ଭିନ୍ନ ପ୍ରକାରର ହୋଇଥାଏ ।

ପକ୍ଷୀ ବସାରେ ଶୋଇଥାନ୍ତି । ବିଶ୍ରାମ କରନ୍ତି ଏବଂ ଅଣ୍ଡା ଦେଇଥାନ୍ତି । ନିଜର ଛୁଆମାନଙ୍କର ପାଳନ ପୋଷଣ ବି କରନ୍ତି । ତାଙ୍କୁ ଉଡ଼ିବା ପାଇଁ ଶିଖାନ୍ତି । ପୁଣି ସେମାନଙ୍କୁ ସ୍ୱତନ୍ତ୍ର ଭାବେ ଜୀବନ ଯାପନ କରିବାକୁ ବାହାରକୁ ଛାଡ଼ିଦିଅନ୍ତି ।



ଦର୍ଜୀ ପକ୍ଷୀ ଏକ ବିଚିତ୍ର ପକ୍ଷୀ । ଛୋଟଗଛର ଅଂଶ ର 'ତାର' ତିଆରି କରି ଥଣ୍ଟରେ ନେଇଆସନ୍ତି । ପୁଣି ଦୁଇଟି ପତ୍ରକୁ ଏକ ସାଥିରେ ରଖି ଖୁବ୍ ନିପୁଣତା ର ସହିତ ଦୁଇଧାରକୁ ସିଲାଇ କରିଦିଅନ୍ତି ।

ଏହି 'ସବୁଜ ଥଳୀ' ରେ ସେ ନିଜର ଛୁଆମାନଙ୍କର ପାଳନ-ପୋଷଣ କରିଥାଆନ୍ତି । ଅନ୍ୟ ପ୍ରାଣୀମାନେ ଏମାନଙ୍କୁ ସହଜରେ ଜାଣିପାରନ୍ତି ନାହିଁ ।



ବାଇ ଚଢ଼େଇଟି ଘାସ ଏବଂ ରେଶାର ପ୍ରୟୋଗ କରି ମଜବୁତ ବସା ବା ନୀଡ଼ର ରଚନା କରିଥା'ନ୍ତି । ବାଇ ଚଢ଼େଇର ବସାଟି ଗଛର ଡାଳରେ ଓହଳିଥାଏ ।



ତା'ର ଉପର ଭାଗ ଗୋଲ ତଥା ବଡ଼ ହୋଇଥାଏ । ସେଥିରେ ଅଣ୍ଡା ରଖିବା ପାଇଁ ଏକ ଛୋଟ ବଖରା ଥାଏ । ପ୍ରବେଶ ଦ୍ୱାର ଛୋଟ ଏବଂ ତଳକୁ ମୋଡ଼ିହୋଇଥାଏ । ତା ଦ୍ୱାରା ଶତ୍ରୁ ଏଥିରେ ପ୍ରବେଶ କରିପାରନ୍ତିନି । ଦେଖିବାକୁ ତାର ରୂପ ସୁରାଇ ପରି ହୋଇଥାଏ ।

କାଠହଣା, ପେଚା, ଧନେଶ ଆଦି ପକ୍ଷୀ ଗଛର କୋଟର ଭିତରେ ରହନ୍ତି । ଧନେଶ ପକ୍ଷୀର ଏକ ଅଦ୍ଭୁତ ସ୍ୱଭାବ ଥାଏ । ଅଣ୍ଡା ଦେବା ପରେ ମାଈ ପକ୍ଷୀଟି ତାର ବସା ଭିତରେ ହିଁ ରହେ । ଅଣ୍ଡିରା ପକ୍ଷୀ ଟି ଛୋଟ ଛୋଟ କାଠ ଖଣ୍ଡ ଦ୍ୱାରା କୋଟରର ଦ୍ୱାରକୁ ବନ୍ଦ କରିଦେଇଥାଏ । ମାଈପକ୍ଷୀର ଥଣ୍ଟ ବାହାରକୁ ବାହାର କରିବା ପାଇଁ ଏକ ଛୋଟ ବାଟ ଖୋଲାରଖିଥାଏ ।



ନରପକ୍ଷୀ ଚାରା ଖୋଜି ଆଣି ସେହି ଛୋଟ ଦ୍ୱାର ଦେଇ ଖାଇବାକୁ ଦିଏ । ଯେବେ ଛୋଟ ଛୁଆଟି ଅଣ୍ଡା ଭିତ ରୁ ବାହାରେ, ମାଈ ପକ୍ଷୀ ଏବଂ ଅଣ୍ଡିରା ପକ୍ଷୀ ଦୁହେଁ ମିଶି ଖାଦ୍ୟ ଖୋଜିବା ପାଇଁ ବାହାରକୁ ଯାଇଥାନ୍ତି ।



କିଛି ପକ୍ଷୀ ନିଜର ବସା ବନାଇ ନଥାନ୍ତି । ମଧୁର ସ୍ୱର ର ପକ୍ଷୀ କୋଇଲି ସେମାନଙ୍କ ମଧ୍ୟରୁ ଗୋଟିଏ । କୋଇଲି ଅନ୍ୟ ପକ୍ଷୀର ବସାରେ ବା ଜମି ଉପରେ ଅଣ୍ଡା ଦେଇଥାଏ । ସେ ଜମି ଉପରେ ଅଣ୍ଡା ଦେଲା ପରେ ଚୁପ୍-ଚାପ୍ କୁଆର ବସାରେ ରଖିଆସେ । କୋଇଲିର ଅଣ୍ଡା କୁଆର ଅଣ୍ଡା ସହିତ ମିଶୁଥାଏ । କୁଆ କୋଇଲିର ଅଣ୍ଡା ଉଷୁମ କରେ । ବଡ ହେଲା ପରେ ହିଁ ଛୋଟ କୋଇଲି ବସାକୁ ଛାଡି ଉଡିଯାଇଥାଏ ।



ଏତିକିବେଳେ ୟୁହିୟୋ ର ଜେଜେବାପା ଗାଁ ବାଲା ଙ୍କ ସହ ଆସି ସେଠି ପହଞ୍ଚିଗଲେ । ସେ ୟୁହିୟୋ କୁ କୋଳରେ ନେଇ କହିଲେ, ''ବାସ୍ ! ବାସ୍ ବହୁତ ହୋଇଗଲା । ଏବେ ଆମ୍ଭେ ସବୁ ସମ୍ଭାଳି ନେବୁ ।'' ଗୋଟିଏ ଚଟାଣର ଛାଇ ରେ ୟୁହିୟୋ କୁ ବିଶ୍ରାମ ନେବାକୁ ଦିଆଗଲା ।

ସମସ୍ତେ ମିଳି ବାଲ୍ଟି ଏବଂ ବାସନରେ ପାଣି ଭରି ଭରି ତିମି ଓପରେ ଢାଳିବାକୁ ଲାଗିଲେ । କେତେକ ଲୋକ ନିଜ ଜାମାକୁ ଭିଜାଇ ତିମିର ଶରୀର ଉପରେ ବିଛାଇଦେଲେ । ତା'ର ସାରା ଶରୀରକୁ ଭିଜାଇଦେଲେ ।

ସନ୍ଧ୍ୟା ହେଲାବେଳକୁ ବଡ଼ ବଡ଼ ଲହଡ଼ି ଉଠିବାରେ ଲାଗିଲା ଏବଂ ତିମିର ଲାଞ୍ଜକୁ ଭିଜାଇ ଦେଲା । ପ୍ରତ୍ୟେକ ଲହଡ଼ି ତିମି ଦେହରେ ପିଟି ହୋଇ ତା'କୁ ନୂଆ ଜୀବନ ଦେଲା । ପୁଣି ଗୋଟିଏ ବଡ଼ ଲହଡ଼ି ତା'କୁ ପଥର ମଧ୍ୟରୁ ଟାଣି ଆଣିଲା । କିଛିକ୍ଷଣ ପାଇଁ ସେ ସ୍ଥିର ହୋଇ ପଡ଼ି ରହିଥିଲା । ପୁଣି ଜୋର ଲଗାଇ ନିଜ ଲାଞ୍ଜ ପିଟି ଏବଂ ପହଁରି ଗଭୀର ସମୁଦ୍ର ମଧ୍ୟରେ ଯାଇ ପହଞ୍ଚିଲା ।

ସମସ୍ତେ ଛିଡ଼ା ହୋଇ ତିମିକୁ ସମୁଦ୍ର ଭିତରେ ଲୁଚିଯିବାର ଦୃଶ୍ୟ ଦେଖୁଥିଲେ । ୟୁହିୟୋ ଚଟାଣ ର ଛାଇରେ ଶାନ୍ତିରେ ଶୋଇ ରହିଥିଲା ।

- ଜାପାନ ଦେଶର କାହାଣୀ



हिन्दी से अनुवाद: बिजय गोपाल ओझा





# ହଜାର ବାଲ୍ଟି ପାଣି

ୟୁହିୟୋ ସମୁଦ୍ର କୂଳରେ ଛିଡ଼ା ହୋଇ ଲହଡ଼ି କୁ ବହୁତ ଧ୍ୟାନରେ ଦେଖୁଥିଲା । ଲହଡ଼ିମାଳା ତା' ପାଦ ଛୁଇଁ ଛୁଇଁ ସମୁଦ୍ର ଭିତରକୁ ଫେରିଯାଉଥିଲେ ।

ଅଚାନକ ତା' ଆଖି ଚଟାଣ ମଧ୍ୟରେ ପଡ଼ିଥିବା ତିମି ଉପରେ ପଡ଼ିଗଲା । ସେ ତା'ର ବଡ଼ ଲାଞ୍ଜକୁ ଥପ୍-ଥପ୍ କରି ଭୂମି ଉପରେ ପିଟୁଥିଲା । ଡରି ଡରି ଆଖିକୁ ବୁଲାଇ ଏପଟ ସେପଟ ଦେଖୁଥିଲା ।





''ଆରେ ! ପାଣି ବିନା ତୁ' ତ ବଂଚି ପାରିବୁ ନାହିଁ । ରହ ! ମୁଁ ତୋତେ ସାହାଯ୍ୟ କରୁଛି,'' କହି ୟୁହିୟୋ ସମୁଦ୍ର ଆଡ଼କୁ ଦୌଡ଼ିଗଲା । ଗୋଟିଏ ବାଲ୍‌ଟିରେ ସମୁଦ୍ରର ପାଣି ଭରି ତିମିର ମୁଣ୍ଡ ଉପରେ ଢାଳିଦେଲା ।

ବହୁତ ଟାଣ ଖରା ଥିଲା । ୟୁହିୟୋ କହିଲା, ''ତୁ ଏତେ ବଡ଼ ଯେ ! ତୋ ପାଇଁ ବହୁତ ପାଣି ଦରକାର ପଡ଼ିବ । କିଛି ଚିନ୍ତା ନାହିଁ । ଏକ ହଜାର ବାଲ୍‌ଟି ପାଣି ଢାଳି ମୁଁ ରହିବି ।''

ପ୍ରତିଥର ପାଣି ଢାଳିବା ସମୟରେ ସେ ଏକ, ଦୁଇ, ତିନି, ଚାରି... କରି ଗଣୁଥିଲା । ଚାରି ବାଲ୍‌ଟି ମଥା ଓପରେ, ଚାରି ବାଲ୍‌ଟି ପିଠି ଓପରେ, ଚାରି ବାଲ୍‌ଟି ଲାଞ୍ଜ ଉପରେ, ଏହି ଭଳି ସେ ତିମି ର ସାରା ଶରୀର ଉପରେ ପାଣି ଢାଳିବାକୁ ଲାଗିଲା ।

କିଛି ସମୟ ପରେ ୟୁହିୟୋ ଥକି ଗଲା । ଗୋଟେ ମିନିଟ୍ ବିଶ୍ରାମ ନେବା ପାଇଁ ଅଟକି ଗଲା । ତେବେ ତିମିର ଆଖି ଓପରେ ତା'ନଜର ପଡ଼ିଲା ।

ତା'କୁ ତା'ର ଶପଥ ମନେ ପଡ଼ିଗଲା । ପୁଣି ବାଲ୍‌ଟି ନେଇ ସମୁଦ୍ର ଆଡ଼କୁ ଚାଲିଲା । ଏ ପର୍ଯ୍ୟନ୍ତ ସେ କେତେ ବାଲ୍‌ଟି ପାଣି ଭରି ଢାଳିଥିବ ? ତା'ର ମନେ ପଡିଲା ନାହିଁ ।

ବାସ୍... ପାଣି ଢାଳିବାରେ ଲାଗିଗଲା । ଥକାଲାଗିବାରୁ ସେ ଚାଲିପାରୁ ନ ଥିଲା । ଗୋଡ଼ ଏଣେ ତେଣେ ପଡୁଥିଲା ।

ଦାନା ଚାଉଳ ରୁ ଆରମ୍ଭ କରି ଦିନକୁ ଦିନ ଚାଉଳମାତ୍ରା ଏତେ ବଢ଼ିଗଲା,' ଏବେ ରାଜା ଚିନ୍ତାରେ ପଡ଼ିଗଲେ ।

ତିରିଶଦିନ ଦିନ ରାଜାଙ୍କ ଗୋଦାମ ଖାଲି ହୋଇଗଲା । ୨୫୬ ଟି ହାତୀ ଉପରେ ଚାଉଳର ୫୩,୬୮,୭୦,୯୧୨ ଦାନା ସୀମାଙ୍କ ଘରକୁ ପଠାଗଲା । ରାଜା ସେ ଛୋଟ ଝିଅଟିକୁ ପଚାରିଲେ, ''ତୁମେ ଏତେ ଚାଉଳ ନେଇ କ'ଣ କରିବ ?''

ର୍ଙ୍କ୍ଷମୁଁ ଭୋକରେ ପୀଡିତ ଲୋକଙ୍କୁ ଏ ସବୁ ବାଣ୍ଟି ଦେବି । ଆପଣଙ୍କୁ ମଧ୍ୟ ମୁଁ ଗୋଟିଏ ଟୋକେଇ ଚାଉଳ ଦେବି । କ'ଣ ଆପଣ ମୋତେ କଥା ଦେବେ କି ଭବିଷ୍ୟତରେ କେବଳ ଯେତେକ ଦରକାର ସେତକ ଚାଉଳ ହିଁ ଆପଣ ରଖିବେ ?'' ସୀମା ପଚାରିଥିଲା । ରାଜା ହିଁ ଭରିଲେ, ''ଠିକ୍ ଅଛି । ମୁଁ ତାହା ହିଁ କରିବି ।''

- ଭାରତ ର ଲୋକ କଥା

ତିରିଶ ଦିନରେ ସବୁ ମିଶାଇ ସୀମାକୁ ୧,୦୭,୩୭,୪୧,୮୨୩ ଚାଉଳ ଦାନା ମିଳିଥିଲା । ଗୋଟିଏ କ୍ୟାଲେଣ୍ଡର ନେଇ ପ୍ରତିଦିନ ସୀମାକୁ ମିଳିଥିବା ଚାଉଳ ର ସଂଖ୍ୟା ଲେଖ । ପୁଣି ତା'ର ମୋଟ ଯୋଗ ସଂଖ୍ୟା ବାହାର କଲେ ସୀମାକୁ ମିଳିଥିବା ଚାଉଳଦାନାର ସଂଖ୍ୟା ସହ ମିଳିବ ।

हिन्दी से अनुवादः बिनता ओझा





# ଗୋଟିଏ ଦାନା ଚାଉଳ

ବହୁତ ଦିନ ଆଗର କଥା । ଗୋଟିଏ ଦେଶର ଜନତା ନିଜ ଖେତ ରେ ହେଉଥିବା ଧାନ ର ଅଧିକାଂଶ ଭାଗ ସରକାରକୁ ଦେଇ ଦେଉଥିଲେ । ଏହି ଭଳି କେତେ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା ।

ଥରେ ଦେଶରେ ଘୋର ଅକାଳ ପଡ଼ିଲା । ଲୋକମାନଙ୍କ ପାଖରେ ଖାଇବାକୁ ଚାଉଳ ବଂଚି ନ   ଥିଲା । ମନ୍ତ୍ରୀମାନେ ରାଜାଙ୍କୁ ପରାମର୍ଶ ଦେଲେ - ''ସରକାର ! ଭଣ୍ଡାର ଖୋଲି ଦିଅନ୍ତୁ । ଲୋକଙ୍କ ମଧ୍ୟରେ ଚାଉଳ ବାଣ୍ଟି ଦିଅନ୍ତୁ ।''

''ଅଝ ।ଳ କେତେ ଦିନ ପର୍ଯ୍ୟନ୍ତ ରହିବ, ଆମକୁ ଜଣା ନାହିଁ । ରାଜମହଲରେ ସର୍ବଦା ଚାଉଳ ଥିବା ଉଚିତ୍ । ଆମକୁ ସମୟ ସମୟରେ ଭୋଜି ମଧ୍ୟ ଦେବାକୁ ପଡ଼େ,'' କହି ରାଜା ଚାଉଳ ଦେବାକୁ ମନା କରିଦେଲେ ।

ଗୋଟିଏ ଦିନ ରାଜମହଲରେ ଭୋଜି ପାଇଁ ଗୋଦାମରୁ ଚାଉଳ ବସ୍ତା ବାହାର କରାଗଲା । ବସ୍ତା ଗୁଡ଼ିକୁ ହାତୀ ଉପରେ ଲଦି ରାଜମହଲ ଆଡକୁ ନିଆଯାଉଥିଲା । ଗୋଟିଏ ବସ୍ତାର ଛିଦ୍ରରୁ ଚାଉଳ ଭୂମିଉପରେ ପଡ଼ିବାକୁ ଲାଗିଲା ।



ଏହା ସୀମା ନାମକ ଛୋଟ ଝିଅଟି ଦେଖି ନେଲା । ସେ ପଡ଼ିଯାଉଥିବା ଚାଉଳକୁ ନିଜ ଲହଙ୍ଗାରେ ଏକତ୍ରିତ କରି ହାତୀ ସାଥିରେ ଚାଲିବାକୁ ଲାଗିଲା ।

ରାଜମହଲ ର ଦ୍ୱାର ପାଖରେ ପହଞ୍ଚିଲାରୁ ସିପାହୀମାନେ ତାକୁ ଜେରା କରିବାକୁ ଲାଗିଲେ । ସୀମା କହିଲା, ‘‘ବସ୍ତାରୁ ଚାଉଳ ଭୂମି ଉପରେ ପଡ଼ି ପଡ଼ି ଆସୁଥିଲା । ମୁଁ ତାକୁ ଏକତ୍ରିତ କରି ରାଜାଙ୍କୁ ଦେବାକୁ ଚାହୁଁଛି ।’’

ସୀମା ର ଇମାନ୍‌ଦାରୀ ବିଷୟରେ ଶୁଣି ରାଜା ତାକୁ ଡାକି କହିଲେ, ‘‘ମୁଁ ତୁମକୁ କିଛି ପୁରସ୍କାର ଦେବାକୁ ଚାହୁଁଛି । ତୁମେ ଯାହା ଚାହଁ ମାଗି ନିଅ ।’’

ସୀମା କହିଲା, ‘‘ମୋତେ କୌଣସି ପୁରସ୍କାର ଦରକାର ନାହିଁ । ପୁଣି ଯଦି ଆପଣ ଚାହାନ୍ତି ମୋତେ ମାତ୍ର ଚାଉଳର ଗୋଟିଏ ଦାନା ଦିଅନ୍ତୁ । ଏତିକି ମୋ ପାଇଁ ଯଥେଷ୍ଟ ହେବ ।’’

ରାଜା ଆଶ୍ଚର୍ଯ୍ୟଚକିତ ହୋଇଗଲେ । କହିଲେ, ‘‘ମୁଁ ରାଜା ଅଟେ ! ମୋ ନିଜ ଶକ୍ତିଅନୁସାରେ ପୁରସ୍କାର ଦେବାକୁ ଚାହୁଁଛି । ତୁମେ ଆଉ କିଛି ମାଗ ।’’

ସୀମା ଭାବିକରି କହିଲା, ‘‘ଠିକ୍ ଅଛି ! ଆଜି ମୋତେ ଗୋଟିଏ ଦାନା ଚାଉଳ ଦେଇ ଦିଅନ୍ତୁ । ଆସନ୍ତାକାଲି ଦୁଇଟି ଦାନା, ପହରିଦିନ ଚାରିଟିଦାନା, ଏହି ଭଳି ପ୍ରତି ଦିନ ପୂର୍ବ ଦିନରେ ଦିଆଯାଉଥିବା ଚାଉଳର ଦୁଇଗୁଣା ଚାଉଳ ଦିଅନ୍ତୁ । ଏମିତି ତିରିଶ ଦିନ ପର୍ଯ୍ୟନ୍ତ ଦିଅନ୍ତୁ ।’’

ରାଜାଙ୍କୁ ସୀମାର ଏହି ଭିକ୍ଷା ବହୁତ ବେଶୀ ଲାଗି ନ ଥିଲା । ସେ ତୁରନ୍ତ ସୀମାର କଥା ମାନିନେଲେ । ସୀମାକୁ ସେ ଦିନ ଗୋଟିଏ ଦାନା ଚାଉଳ ଦେଇ ଦିଆଗଲା । ଦ୍ୱିତୀୟ ଦିନ ଦୁଇଟି ଦାନା ଚାଉଳ, ତୃତୀୟ ଦିନ ଚାରିଟି ଦାନା ଚାଉଳ, ଦଶମ ଦିନ ୫୧୨ ଟି ଦାନା ଚାଉଳ ଦିଆଗଲା । ଏହା ଏକ ମୁଠି ବରାବର ଥିଲା ।

ଷୋଡଶ ଦିନ ତାକୁ ଦୁଇଟି ଟୋକେଇ ଚାଉଳ ଦିଆଗଲା । ସେଥିର ୩୨,୭୬୮ ଟି ଚାଉଳ ଦାନା ଥିଲା । ରାଜା ଭାବିଲେ, ‘‘ଏହି ଦୁଇଗୁଣା ପ୍ରକାରରେ ମୁଁ ଯାହା ଭାବିଥିଲି ତା’ ଠାରୁ ବହୁତ ବେଶୀ ଚାଉଳର ଦାନା ଦେବାକୁ ପଡୁଛି । ତଥାପି କିଛି ଚିନ୍ତା ନାହିଁ ।’’

ଚବିଶଦିନ ହେଲାରୁ ସୀମାକୁ ଆଠଟି ଟୋକେଇରେ ୮୩,୮୮,୬୦୮ ଦାନା ଚାଉଳ ଦିଆଗଲା । ସତାଇଶ ଦିନକୁ ୬୪ ଟୋକେଇ ଚାଉଳ ୩୨ ଟି ହାତୀ ଉପରେ ଲଦି ସୀମାର ଘରକୁ ପଠାଇ ଦିଆଗଲା । ଯେଉଁଥିରେ ୬,୭୧,୦୮,୮୬୪ ଦାନା ଚାଉଳ ଥିଲା । ‘ଗୋଟିଏ



ମୁଁ ଏସବୁ ଛୁପି କରି ଦେଖୁଥିଲି । ଯେମିତି ମୁଁ ଧୀରେ ବାହାରକୁ ଆସିଲି, ସେ'ଠି ଭୂଇଁରେ ପଡିଥିବା  କିଛି ଅଟା ମୋ ଶରୀରର ଅଧା ଭାଗରେ ଲାଗିଗଲା । ସେ ଭାଗ ସୁନେଲି ରଙ୍ଗରେ ବଦଳି ଗଲା । ମୋ ଶରୀରର ଅବଶିଷ୍ଟ ଭାଗ ଯେମିତିକି ସେମିତି ରହିଗଲା ।

ସେହିଦିନଠାରୁ ମୁଁ ଜାଗା-ଜାଗା ଯାତ୍ରା କରୁଛି । ଗଡ଼ି-ଗଡ଼ି କରି ଦେଖୁଥିଲି କି ମୋ ଶରୀରର ବାକିଅଂଶ ସୁନା ବନି ପାରୁଛି କି ନାହିଁ । ଏ ପର୍ଯ୍ୟନ୍ତ ସେମିତି କେବେ ହୋଇପାରିଲାନି ।

ଆଜି ଆପଣଙ୍କ ଉତ୍ସବରେ ଆସିଥିଲି । ଏଠି ବି ଗଡି ଗଡି କରି ଦେଖିନେଲି । କିନ୍ତୁ ମୋର ଅବଶିଷ୍ଟ ଭାଗ ସୁନାରେ ପରିଣତ ହେଲାନାହିଁ । ଏଥିପାଇଁ ମୁଁ କହୁଥିଲି କି ଏହା ଗୋଟିଏ ବଡ଼ ଜାକଜମକର ଉତ୍ସବ  ଅଟେ କିନ୍ତୁ ସେ ଗରିବ ଲୋକଟିର ଦାନ ସହିତ ସମାନ ନୁହେଁ ।

ଏହାକହି ନେଉଳ ଉଭେଇଗଲା । ସମସ୍ତେ ଆଶ୍ଚର୍ଯ୍ୟ ଚକିତ ରହିଗଲେ ।








# ସୁନାର ନେଉଳ

ସେ ସମୟର କଥା, ଯେବେ ପାଣ୍ଡବମାନେ ବିଜୟ ଉତ୍ସବ ଧୁମ୍‌ଧାମରେ ପାଳନ କରୁଥିଲେ । ଧର୍ମରାଜ ସମସ୍ତ ରାଜାଙ୍କୁ ଡାକିଥିଲେ । ଏହି ଅବସରରେ ସେ ନିଜର ପ୍ରଜାମାନଙ୍କୁ ଅନ୍ନଦାନ ଦେଉଥିଲେ ।

ହଠାତ୍ ଗୋଟିଏ ନେଉଳ ସେଠାକୁ ଆସିଲା ଏବଂ ଭୂଇଁରେ ଗଡ଼ିବାକୁ ଲାଗିଲା । ସେ ମଣିଷ ର ଶବ୍ଦରେ ଜୋର୍ ଜୋର୍ ରେ ହସିବାକୁ ଲାଗିଲା । ସମସ୍ତେ ତାକୁ ଆଶ୍ଚର୍ଯ୍ୟ ଭାବରେ ଦେଖିବାକୁ ଲାଗିଲେ । ତା'ର ଶରୀରର ଅଧା ଭାଗ ସୁନା ପରି ଚମକୁଥିଲା ।





ନେଉଳ ଧର୍ମରାଜଙ୍କୁ କହିଲା, ‘‘ହେ ରାଜା ! ଏ ଉତ୍ସବ ବହୁତ ଅଦ୍ଭୁତ ଅଟେ । ତୁମେ ନିଜର ଧନ ସଂପତ୍ତି କୁ ବଡ଼ ଉଦାରତା ସହିତ ବାଣ୍ଟୁଛ । ତଥାପି ଏ ଦାନ ସେ ଦାନ ସହିତ ସମାନ ନୁହେଁ ଯାହା ମୋତେ ଏକ ଗରିବ ଦେଇଥିଲା ।’’

ଧର୍ମରାଜ ପଚାରିଲେ, ‘‘କାହିଁକି ? ଏଇଠି ତୁମକୁ କଣ ଅଭାବ ଦେଖାଗଲା ?’’

‘‘ପ୍ରଥମେ ମୋର ଅଧା ଶରୀର ସୁନା ହେବାର କାହାଣୀ ଶୁଣନ୍ତୁ,’’ କହିକରି ନେଉଳ ନିଜ କାହାଣୀ ଶୁଣାଇବାକୁ ଆରମ୍ଭ କଲା ।

‘‘ଏଝ ଗାଁରେ ଜଣେ ଗରିବ ଲୋକ ଥିଲା ।’’ ସେ ପ୍ରତ୍ୟେକ ଦିନ ଖେତରେ କାମ କରି ଅଳ୍ପବହୁତ ଶସ୍ୟଘରକୁ ଆଣୁଥିଲା । ସେ ନିଜର ପରିବାର ସଦସ୍ୟଙ୍କ ସହିତ ବାଣ୍ଟିକରି ନିଜର ପେଟ ପୋଷୁଥିଲା ।

ଥରେ ଗାଆଁରେ ଅକାଳ ପଡିଲା । ଖାଇବାକୁ କିଛି ମିଳିଲାନି । ତିନି ଦିନ ଧରି ଭୋକରେ ରହିବା ପରେ ତାକୁ କିଛି ଶସ୍ୟ ର ଦାନା ମିଳିଥିଲା । ସେ ଶସ୍ୟକୁ ପେଷି ନିଜର ପତ୍ନୀ, ପୁଅ ଏବଂ ବୋହୂଙ୍କ ସହିତ ବାଣ୍ଟିନେଲା ।

ହଠାତ୍ ଜଣେ ବୃଦ୍ଧ ଯାତ୍ରୀ ସେଠାରେ ଆସି ପହଞ୍ଚିଲେ । ସେ କହିଲେ, ‘‘ମୁଁ ବହୁତ ଭୋକିଲା ଅଛି । କୃପାକରି ମୋତେ ଖାଇବା ପାଇଁ କିଛି ଦିଅ ।’’ ସେ ଗରିବ ଲୋକଟି ନିଜ ଭାଗ ଖାଦ୍ୟ ତାକୁ ଦେଇଦେଲା । କିନ୍ତୁ ବୃଦ୍ଧ ଯାତ୍ରୀ ଜଣକ ଭୋକିଲା ଥିଲେ । ସେ ଆହୁରି ଭୋଜନ ପଦାର୍ଥ ମାଗିଲେ ।

ଗରିବ ଲୋକର ପତ୍ନୀ ଶୀଘ୍ର ନିଜର ଭାଗ ମଧ୍ୟ ବୃଦ୍ଧଙ୍କୁ ଦେଇଦେଲା । ତଥାପି ବୃଦ୍ଧଙ୍କର ଭୋକ ମେଣ୍ଟିଲାନି । ଏହାଦେଖି ସେ ଗରିବ ଲୋକର ପୁତ୍ରବି ନିଜର ଭାଗ ଖାଦ୍ୟ ତାଙ୍କୁ ଦେଇଦେଲା । ବୃଦ୍ଧ ତାକୁ ବି ଖାଇନେଲା, ପୁଣି ଆହୁରି ଖାଇବାକୁ ମାଗିଲା । ଶେଷରେ, ଗରିବ ଲୋକଟିର ବୋହୂ ନିଜର ଭାଗ ବି ତାଙ୍କୁ ଦେଇଦେଲା ।

ତେବେ ଯାଇଁ ବୃଦ୍ଧଙ୍କର ଭୋକ ମେଣ୍ଟିଲା । ସେ କହିଲା, ‘‘ତୁମେ ସମସ୍ତେ ଭୋକିଲା ସତ୍ତ୍ୱେବି ନିଜ ନିଜର ଭାଗର ଖାଦ୍ୟ ପଦାର୍ଥ ମୋତେ ଦେଇଦେଲ । ରାଜାମାନଙ୍କ ଦ୍ୱାରା କରାଯାଇଥିବା ଯଜ୍ଞ ଓ ଦାନ ବି ଏହାର ବରାବରି କରି ପାରିବେନି ।’’ ସେ ସମସ୍ତଙ୍କୁ ଆଶୀର୍ବାଦ ଦେଲା ଏବଂ ଉଭେଇଗଲା ।



ହଁ ! ରାସ୍ତାରେ ବହୁତ ସୁନ୍ଦର ଫୁଲଫୁଟିଥିଲା, ଫଟା ମାଠିଆଟି ନିଜର ଦୁଃଖ ଭୁଲି ଫୁଲର ଆନନ୍ଦ ନେବାକୁ ଲାଗିଲା । କିନ୍ତୁ ଘର ପହଞ୍ଚି କମ୍ ପାଣି ଦେଖି ପୁଣି ପଶ୍ଚାତାପ କଲା । କହିଲା, ‘‘ସୁନ୍ଦର ଫୁଲ ଦେଖାଇ, ମୋ ଦୁଃଖ ଭୁଲାଇଦେଲା । କିନ୍ତୁ ମୁଁ ନିଜର କମ୍‌ପଣିଆକୁ ଭୁଲି ପାରୁନାହିଁ ।’’

ଗୋପାଳ କହିଲା, ‘‘ତୁ ମୋ କଥାକୁ ଠିକ୍ ଭାବରେ ବୁଝି ନାହୁଁ । ପ୍ରତିଦିନ ଘର ଆସିବା ଯିବାରେ ଯେଉଁ ପାଣି ବହାଇଦେଇଛ, ସେଥିରେ ଏ ଗଛ ପାଣି ପାଇଛି ଏବଂଏଥିରେ ଫୁଲଫୁଟିଅଛି । ମୁଁ ଚାହିଁଥିଲେ ତ ଗୋଟିଏ ନୂଆ ମାଠିଆ କିଣି ପାରିଥାନ୍ତି । କିନ୍ତୁ ମୋର ପ୍ରିୟ ମାଠିଆ, ତୁମର ପାଣି ପାଇ ଏ ଫୁଲର ଜୀବନ ସଂଚାର ହୋଇଛି । ଏ ଫୁଲ ଫୁଟି ସମସ୍ତଙ୍କୁ ଖୁସି ଦେଇପାରିଛି । ତୁମେ ତ ଏ କାମରେ ସହାୟତା କରିଛ !’’

ଏହା ଶୁଣି ଫଟା ମାଠିଆଟି ଧୀରେ ମୁରକି ହସିଲା ଏବଂ ଫୁଲଗୁଡିକ ର ମଜା ନେବାକୁ ଲାଗିଲା ।

- ଭାରତର ଲୋକ କଥା



हिन्दी से अनुवादः बिजय गोपाल ओझा

कथा झरना
चित्रांकनः एस.पी. राजू
अमेरिका इंडिया फाउंडेशन के लिए एकलव्य द्वारा प्रकाशित
Chatnath Trust

# ବାଙ୍ଗରା ବା ଲମ୍ବା



ଓଟ ଏବଂ ଘୁଷୁରି ସବୁବେଳେ ଜଣେ ଅନ୍ୟଜଣଙ୍କୁ ଚିଡାଉଥିଲେ । ଗୋଟେ ଦିନ ବଗିଚାରେ.....

ଓଟ : ଆରେ ବାଙ୍ଗରୁ ! କ'ଣ ତୋର ମୋ ଭଳି ଲମ୍ବା ହେବାକୁ ଇଚ୍ଛା ହେଉନାହିଁ ?

ଘୁଷୁରି : ଏ..ଲମ୍ବୁ ! ତୋ ଭଳିଆ ଲମ୍ବା ହେବାକୁ ମୁଁ କାହିଁକି ଚାହିଁବି ? ଲମ୍ବା ହେବାଠାରୁ ବାଙ୍ଗରା ହେବା ବହୁତ ଭଲ ।

ଓଟ : ତୁ ଏମିତି କେମିତି କହିପାରୁଛୁ ? ଏବେ ମୋତେ ଦେଖ ! ଏହି ଉଚ୍ଚ କାନ୍ଥର ଆର ପଟରେ ସବୁ ଜିନିଷକୁ ମୁଁ ମଜାରେ ଦେଖି ପାରୁଛି । ସେଠାରେ ଖାଇବାକୁ ଭଲ ଭଲ ଜିନିଷ ଅଛି । ସବୁଜ ରଙ୍ଗ ଭରା ଡାଳ ଏବଂ ପତ୍ର ଅଛି, ଯାହା ପର୍ଯ୍ୟନ୍ତ ମୁଁ ସହଜରେ ପହଞ୍ଚି ପାରିବି । ତୁ ତ ସେସବୁ ଦେଖି ପାରିବୁ ନାହିଁ । ଏବେ ବୁଝି ପାରିଲୁ ତ ? ଲମ୍ବା ହେବା କେତେ ଭଲ ଅଟେ ।





ଘୁଷୁରି : ଧୈର୍ଯ୍ୟ ଧର ଭାଇ ! ଧୈର୍ଯ୍ୟ ଧର ! ଏହି କାନ୍ଥର ତଳେ କଣାକୁ ତ ଦେଖ । ମୁଁ ତା' ଭିତର ଦେଇ ସେପଟକୁ ଯାଇପାରିବି । ସେପଟରେ ଥିବା ଜିନିଷକୁ ମନଇଚ୍ଛା ଖାଇ ପାରିବି । ତୁ ତ ତା' ଭିତର ଦେଇ ପଶି ପାରିବୁ ନାହିଁ । ଏହି ପଟରୁ ଥାଇ ଛିଡା ହୋଇ ମୋତେ ଖାଉଥିବାବେଳେ ଦେଖିପାରିବୁ ।

ଏହା କହି ଘୁଷୁରି କଣା ଭିତର ଦେଇ ପଶି ଆରପଟକୁ ଚାଲିଗଲା ।

ଓଟ : ତୁମେ ତ ଠିକ୍ କହୁଛ । ବାଙ୍ଗରା ହେବାରତ ଲାଭ ଅଛି ଏବଂ ଲମ୍ବା ହେବାର ମଧ୍ୟ ।

ଲମ୍ବାର ଲମ୍ବା ହେବା ଭଲ ! ବାଙ୍ଗରା ର ତା' ବାଙ୍ଗରା ପଣ !

# ଭଙ୍ଗା ମାଠିଆ

ଗୋପାଳ ଦିନରେ କେତେ ଥର ନଦୀ ଆଡେ ଯାଏ । ଦୁଇଟି ମାଠିଆରେ ପାଣି ଭରି ଆଣେ । ଗୋଟିଏ ମାଠିଆ ଫଟା ଥିଲା, ଯେଉଁଥିରୁ ପାଣି ଝରୁଥିଲା । ଘର ପହଞ୍ଚିବା ଭିତରେ ସେ ମାଠିଆରେ ଅଧା ପାଣି ରହି ଯାଉଥିଲା ।

ଯେଉଁ ମାଠିଆରେ ଫଟା ନ ଥିଲା, ସେ ଗର୍ବର ସହ କହୁଥିଲା, ''ମୋତେ ଦେଖ ! ମୁଁ ବୁନ୍ଦେ ହେଲେ ପାଣି ପକାଉନାହିଁ । ପୂରା ପାଣି ଘର ପର୍ଯ୍ୟନ୍ତ ପହଞ୍ଚାଉ ଅଛି ।''



ଫଟାଥିବା ମାଠିଆ କୁ ବହୁତ ଦୁଃଖ ଲାଗୁଥିଲା । ଦିନେ ସେ ଗୋପାଳକୁ ନିଜର ଦୁଃଖ ଶୁଣାଇଲା, ''ମୋତେ କ୍ଷମା କରିଦିଅ । ତୁମେ କେତେ ଶ୍ରମ କରି ପାଣି ବୋହିକରି ଆଣୁଛ । କିନ୍ତୁ ମୁଁ ତ ସେଥିରୁ ଅଧା ପାଣି ବହାଇ ଦେଉଛି ।''

ଗୋପାଳ ହସିବାକୁ ଲାଗିଲା । ଫଟା ମାଠିଆକୁ ସ୍ନେହ ଭରା ଆଖିରେ ଦେଖିଲା ଏବଂ କହିଲା, ''ଘର ଆଡକୁ ଯାଉଥିବା ଏ ଚଲାପଥର ଧାରରେ ସୁନ୍ଦର-ସୁନ୍ଦର ଫୁଲ ଫୁଟିଛି, ସେ ଗୁଡିକୁ ତ ଦେଖ ।''

ବାପା ଛେଳିଟି ନିଜ ସ୍ୱର ବଦଳାଇ ପଚାରିଲା, ''ପିଲା କାହିଁକି ଚିତ୍କାର କରୁଛି ?''

ମା' ଛେଳିଟି କହିବାରେ ଲାଗିଲା, ''ପିଲାଟି ଜିଦ୍ କରୁଛି କି ଯେବେଠାରୁ ସେ ଏଠାକୁ ଆସିଲାଣି ଖାଲି ହାତୀ, ଭାଲୁ, ମଇଁଷି ଙ୍କୁ ଖାଉଛି । ଆଜି ତାକୁ ଖାଇବା ପାଇଁ ବାଘ ଦରକାର ।''

ବାପା ଛେଳିଟି କହିଲା, ''ଠିକ୍ ଅଛି । ମୁଁ ବାଘକୁ ଆଣିବାପାଇଁ ଶିଆଳକୁ ପଠାଇଛି । ସେ ବାଘ ସାଥିରେ ଏବେ ଆସୁଥିବ ।''

ଏହି କଥା ଶୁଣି ବାଘ ଭୟରେ କମ୍ପିବାକୁ ଲାଗିଲା । ବାପ୍‌ରେ ! ଭିତରେ ରହିବା ପିଲାଟି ହାତୀ, ମଇଁଷି, ଭାଲୁ ଆଦିଙ୍କୁ ଖାଇ ସାରିଲାଣି । ମୁଁ ତା' ହାତରେ ପଡ଼ିଯିବିତ ମୋର ଅବସ୍ଥା ସେ କଣ କରିବ ? ଏକ କ୍ଷଣବି ସେଠାରେ ନ ରହି ସେ ସେଠାରୁ ପଳାଇଗଲା । ଆଉ ଶିଆଳ ସେଠାରେ ଟିକେ ହେଲେବି ରହିବ !

- ଭାରତର ଲୋକକଥା



हिन्दी से अनुवादः बिजय गोपाल ओझा




कथा झरना

चित्रांकनः उमा कृष्णास्वामी



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust


# ଚତୁର ଛେଳିଛୁଆ



ଛେଳିଛୁଆଟି ବାହାରକୁ ଝାଙ୍କିକରି ଦେଖିଲା । ସବୁ କିଛି କେତେ ସୁନ୍ଦର ! ସେ ଧୀରେ ଧୀରେ ଗୁମ୍ଫାଭିତରୁ ବାହାରକୁ ଆସିଲା । ତା'ର ବାପା ମା'ତ ଚାରା ଖୋଜି କରି ସଂଧ୍ୟା ବେଳକୁ ହିଁ ଆସିବେ ।

ଛେଳିଛୁଆଟିର ବାପା ମା' ତା'କୁ କହିଯାଇଥିଲେ, ''ଜଙ୍ଗଲରେ ବାଘ, ସିଂହ, ହେଟାବାଘ ସବୁ ବୁଲୁଥାନ୍ତି । ତୁ ଏକାକୀ କୁଆଡେ ଯିବୁନି ।'' କିନ୍ତୁ ଛେଳିଛୁଆଟି ରହିପାରିଲାନି । ବୁଲୁବୁଲୁ ବହୁତ ଦୂରକୁ ଚାଲିଗଲା । ଯେମିତି ଅନ୍ଧାର ହେବାରେ ଲାଗିଲା, ତା'ର ଘର କଥା ମନେପଡ଼ିଲା । କିନ୍ତୁ ତାକୁ ଫେରି ଯିବାର ରାସ୍ତା ଜଣା ନ ଥିଲା !

ପାଖରେ ଗୋଟିଏ ଗୁମ୍ଫା ଥିଲା । ସେ ତା' ଭିତରେ ପଶିଗଲା । ସେ ଗୁମ୍ଫାରେ ଶିଆଳଟିଏ ରହୁଥିଲା । କିନ୍ତୁ ଶିଆଳଟି ସେ ସମୟରେ ବାହାରକୁ ଯାଇଥିଲା । ନିଜ ବାପା ମା' ଫେରିବା ପର୍ଯ୍ୟନ୍ତ ଛେଳି ଛୁଆଟି ସେହିଠାରେ ଅପେକ୍ଷାକରିବାକୁ ଲାଗିଲା ।





ସକାଳହେଲା । ଶିଆଳଟି ନିଜ ଗୁମ୍ଫାକୁ ଫେରିଲା । 'ଭିତରେ କେହି ନୂଆ ପଶୁଟିଏ ଅଛି,' ଗୁମ୍ଫା ପାଖରେ ପହଞ୍ଚିବା ପରେ ଶିଆଳକୁ ଅନୁଭବ ହେଲା । ସେ ଦ୍ୱାର ପାଖରେ ହିଁ ଅଟକିଗଲା ।

ହ୍ମଁକିଏ ସେ ଭିତରେ ଅଛି ? ଶୀଘ୍ର ବାହାରକୁ ଆସ,'' ଶିଆଳଟି ଧମକାଇ କହିଲା । ଛେଳିଛୁଆଟି କି ଟିକେ ଫସିବାର ଥିଲା ! ସେ ନିଜ ସ୍ୱର ବଦଳାଇ କହିଲା, ''ହା ! ହା ! ହା ! ମୁଁ ସିଂହର ବଡ଼ବାପା ଅଟେ । ମୁଁ ଗୋଟିଏ ଦିନରେ ପଚାଶ ଟା ବାଘ ଖାଏ । ଶୀଘ୍ର ଯାଅ ଏବଂ ମୋ ପାଇଁ ବାଘକୁ ଧରିନେଇ ଆସ ।''

ବାଃ ! ଶିଆଳ ତ ଡରିଗଲା । ଜଲ୍ଦି ଜଲ୍ଦି ସେଠାରୁ ପଳେଇଗଲା । ବାଘ ମୁଖିଆ ପାଖକୁ ଗଲା ଏବଂ କହିଲା, ''ବାଘ କକା ! ବାଘ କକା ! ଏକ ଭୟଙ୍କର ପଶୁ ମୋ ଘର ଭିତରକୁ ପଶିଆସିଛି । ସେ ଖାଇବା ପାଇଁ ପଚାଶ ଟା ବାଘ ମାଗୁଛି ।''





'ହା ! ହା ! ହା !' ବାଘ ହସି ଉଠିଲା, ହ୍ମଁଓଃ ! ଏମିତି କେଉଁ ପଶୁ ଅଛି ଯିଏ ପଚାଶଟା ବାଘ ଖାଇପାରିବ ? ତାକୁ ଟିକେ ମୋତେ ଦେଖାଅ । ମୁଁ ତାକୁ ଘଉଡ଼ାଇ ଦେବି ।''

ଏହା ଭିତରେ ଛେଳିଛୁଆଟିର ବାପା ମା' ତାକୁ ଖୋଜି ଖୋଜି ସେଠାରେ ପହଁଚିଗଲେ । ଛେଳି ଛୁଆଟିର ପାଦଚିହ୍ନ ସାହାଯ୍ୟରେ ସେମାନେ ତାର ଠିକଣା ଜାଣିନେଲେ ।

ଛେଳିଛୁଆଟି ତା ବାପା ମାଙ୍କୁ ସବୁ କଥା କହିଦେଲା । ସେତିକିବେଳେ ତାଙ୍କୁ ଦୂରରୁ ଶିଆଳ ଏବଂ ବାଘକୁ ଆସିବାର ଦେଖାଗଲା । ତିନିଜଣଯାକ ଗୁମ୍ଫା ଭିତରେ ଲୁଚିଗଲେ ଏବଂ ଯୋଜନା ବନାଇଲେ ! ଯେମିତି ଶିଆଳ ଏବଂ ବାଘ ଗୁମ୍ଫା ନିକଟକୁ ଆସିଲେ, ମା' ଛେଳିଟି ଛେଳିଛୁଆଟିର କାନକୁ ମୋଡ଼ିଦେଲା । 'ଆଃ' ଛୁଆଟି ଜୋର୍‌ରେ ଚିତ୍କାର କଲା ।



# ବଜାଅ ବଂଶୀ

ଚୀନ୍ ଦେଶରେ ପିଙ୍ଗ୍ ନାମରେ ଏକ ଧନୀ ବ୍ୟକ୍ତି ରହୁଥିଲେ । ସେ ସବୁ ସମୟରେ ପଇସା ଗଣିବାରେ ବ୍ୟସ୍ତ ରହୁଥିଲେ । ଯେବେ ତା'ର ପିଲାମାନେ ତା'କୁ ଖେଳିବାକୁ ଡାକୁଥିଲେ ସେ କହୁଥିଲା ''ମୋର ସମୟ ନାହିଁ, ମୋତେ ପଇସା ଗଣିବାକୁ ପଡ଼ିବ ।''

ତା' ଘର ପାଖରେ 'ଲୀ' ନାମକ ଏକ ଗରିବ ବ୍ୟକ୍ତି ରହୁଥିଲା । ସାରାଦିନ ସେ ଜମି ବାଡ଼ିରେ କାମ କରେ । ଯେବେ ତା'କୁ ଟିକେ ସମୟ ମିଳେ ସେ ବଂଶୀ ବଜାଏ । ତା'ର ସ୍ତ୍ରୀ ଆଉ ପିଲାମାନେ ତା'ର ସଂଗୀତ କୁ ମନ୍ତ୍ରମୁଗ୍ଧ ହୋଇ ଶୁଣନ୍ତି । ପଶୁ, ପକ୍ଷୀ, ଗଛ, ଲତା ବି ସବୁ କିଛି ଭୁଲି ତା'ର ମଧୁର ସଂଗୀତ ଶୁଣନ୍ତି ।

ତା'ର ସଂଗୀତ ଲହରୀ ପବନରେ ମିଶି ପିଙ୍ଗ୍ ର କାନରେ ବି ପଡ଼େ । ପଇସା ଗଣୁ ଗଣୁ ତା'ର ଧ୍ୟାନଭଗ୍ନ ହୋଇଯାଏ । ''ହାୟ ରେ ! ମୁଁ କେତେ ପଯ୍ୟନ୍ତ ଗଣିଥିଲି ? ମୁଁ ତ ଭୁଲିଗଲି !'' ବଡ଼-ବଡ଼ କରି ସେ ପୁଣି ପଇସା ଗଣିବା ଆରମ୍ଭ କରିଦିଏ ।

ଏ ସମସ୍ୟାରୁ କୌଣସିମତେ ଉଚିତ୍ ରକ୍ଷା ପାଇବା ପାଇଁ ପିଙ୍ଗ୍ ମନରେ ଏକ ଉପାୟ ପାଞ୍ଚିଲା । ସେ ଗୋଟିଏ ଥଳୀରେ ପଇସା ଭରି 'ଲୀ' ର ଘରକୁ ଗଲା । 'ଲୀ' କୁ ପୁରସ୍କାର ସ୍ୱରୂପ ସେ ଥଳୀ ଦେଲା ।



ସ୍ନେହମମତା ଓ ଅନୁରାଗ ଅଛି, ସେ କେବେ ବି ଗରୀବ ନୁହେଁ ।''

'ଲୀ' କିଛିକ୍ଷଣ ପଇସା ଗଣିବା ବନ୍ଦକରିଦେଲା । ମୁଣ୍ଡ ଉଠାଇ ଆକାଶକୁ ଦେଖିଲା । ତାରାରେ ଭରିଥିବା ଆକାଶ ତାକୁ ଗୋଟିଏ ବଗିଚା ପରି ଲାଗିଲା । ସେ ବହୁ ସମୟ ଧରି ଆକାଶକୁ ଦେଖିବାରେ ଲାଗିଲା । ଧନକୁ କିଭଳି ଉପଯୋଗ କରିବା ଉଚିତ୍, ସେ ସବୁ ବୁଝିପାରିଲା ।

ରାତିସାରା ଅନିଦ୍ରାହୋଇ ସେ ବହୁତ ସାରା ବଂଶୀ ବନାଇଲା । ସକାଳୁ ଉଠି ପିଙ୍ଗ୍‌ର ଘରକୁ ଗଲା । ତା'କୁ ତା'ପଇସାରେ ଭରା ଥଳୀକୁ ଫେରାଇ ଦେଲା । କହିଲା, ''ଏହାଦ୍ୱାରା ମୋ ମନରେ ଶାନ୍ତି ଭଙ୍ଗ ହେବାରେ ଲାଗିଥିଲା । ତେଣୁ ଏହା ମୋର ଆଉ ଦରକାର ନାହିଁ । ଏ ରହିଲା ମୋର ସମ୍ପତ୍ତି, ମୁଁ ଏହାକୁ ତୁମମାନଙ୍କ ସାଥିରେ ବାଣ୍ଟିବାକୁ ଚାହୁଁଛି ।'' 'ଲୀ', ବଂଶୀ ଭରା ଏକ ଗଣ୍ଠିଲି ପିଙ୍ଗ୍‌କୁ ଭେଟ ସ୍ୱରୂପ ଦେଇଦେଲା ।

ସାଙ୍ଗେ ସାଙ୍ଗେ ପିଙ୍ଗ୍‌ର ପିଲାମାନେ ଆସି ଗୋଟିଏ ଗୋଟିଏ ବଂଶୀ ନେଇ ବଜାଇବା ଆରମ୍ଭକରିଦେଲେ ଏବଂ ଆଉ ଆନନ୍ଦରେ ନାଚିବାକୁ ଲାଗିଲେ । 'ଲୀ' କହିଲା, ''ଦେଖିଲ ! ସୁନା ଆଉ ଚାନ୍ଦିର ମୂଲ୍ୟ ଆମେ ଲଗାଇପାରିବା । ହେଲେ ସୁଖଶାନ୍ତି ଅମୂଲ୍ୟ ଅଟେ ।'' ପିଙ୍ଗ୍ ଚିନ୍ତାରେ ପଡ଼ିଗଲା । ପୁଣି ସେ ବି ଏକ ବଂଶୀ ନେଇ ବଜାଇବାରେ ଲାଗିଲା ।

- ଚୀନ୍‌ର ଲୋକକଥା



हिन्दी से अनुवादः बिजय गोपाल ओझा



कथा झरना
चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



'ହାତରେ ଯେବେ ପଇସା ହେବ ସେ ଶାନ୍ତିରେ କେମିତି ଗୀତ ଗାଇବ, ଭଲା ମୁଁ ଏବେ ଦେଖିବି!' ଏହି କଥା ଭାବି ମନକୁମନ ହସି ହସି ଘରକୁ ଫେରିଲା ।

'ଲୀ' ପ୍ରଥମେ କିଛି ବୁଝି ପାରିଲାନି । ଏତେ ସାରା ପଇସା ସେ ଜୀବନରେ କେବେ ଦେଖି ନ ଥିଲା । ସେ ପଇସା ଗଣିବାରେ ଲାଗିଲା । ଅଧା ଟଙ୍କା ଗଣିବାରେ ତା'ର ମନରେ ସନ୍ଦେହ ହେଲା । 'ବୋଧେ, ମୁଁ ଠିକ୍ ଭାବରେ ଗଣିପାରିନି ।' ସେ ପୁଣି ଆଉଥରେ ଗଣିବା ଆରମ୍ଭ କଲା । ପୂରାଦିନ ପଇସା ଗଣିବାରେ ହିଁ ବିତିଗଲା । ଲୀ ସେଦିନ ଥରେ ହେଲେ ବଂଶୀ ବଜାଇ ନାହିଁ ।

ତା'ପରଦିନ 'ଲୀ' ବଡ଼ ଚିନ୍ତାରେ ପଡ଼ିଗଲା । 'ଏ ଧନରେ ଭରା ଥଳୀକୁ କେଉଁଠି ସମ୍ଭାଳିରଖିବି ?' ପ୍ରଥମେ ତାକୁ କଳସି ଭିତରେ, ତା'ପରେ ପେଟିରେ, ପୁଣି ମଞ୍ଚାଉପରେ- ଏହିପରି ଭାବରେ ଜାଗା ପରେ ଜାଗା ବଦଳାଇବାରେ ଲାଗିଲା । ଶେଷରେ କୂଅରେ ଛୁପାଇ ରଖିଲା । ସେଦିନ ସେ ଥରେ ହେଲେ ବଂଶୀ ବଜାଇ ନ ଥିଲା ।

ତୃତୀୟ ଦିନ ପଇସା ପତ୍ର କେମିତି ଖର୍ଚ୍ଚକରିବ ଏ ଚିନ୍ତାରେ ପଡିଗଲା । 'ବଳଦ କିଣିବ, ହଳ କିଣିବ ନା କୁକୁଡା ?' ଏହି ଚିନ୍ତାରେ ସେ ଦିନ ବି ଲୀ ବଂଶୀ ବଜାଇଲାନାହିଁ ।



ତା'ପରଦିନ ତା'ମନରେ ପୁଣି ଶଙ୍କା ଉତ୍ପନ୍ନ ହେଲା । 'ସବୁଜିନିଷ କିଣିବା ପାଇଁ ଥଳୀରେ ପର୍ଯ୍ୟାପ୍ତ ପଇସା ଅଛି ତ?' ସେ କୂଅ ଭିତରେ ଛୁପାଇ ରଖିଥିବା ଥଳୀ ବାହାର କରିଲା । ସେ ପଇସାକୁ ପୁଣି ଗଣିବାକୁ ଲାଗିଲା ।

ସେହି ସମୟରେ ତା'ର ପିଲାମାନେ ପଚାରିଲେ, ''ବାପା, ଆପଣ ବଂଶୀ କାହିଁକି ବଜାଉନାହାନ୍ତି ?'' ଲୀ ବିରକ୍ତ ହୋଇ କହିଲା, ''ମୋତେ ଏବେ ସମୟ ନାହିଁ । ପଇସା ଗଣିବାର ଅଛି ।'' ଲୀ ର ଏ ପ୍ରକାର ରୁକ୍ଷ ବ୍ୟବହାର ରେ ତା' ସ୍ତ୍ରୀ ବହୁତ ଦୁଃଖିତ ହେଲା ।

ସେ 'ଲୀ' କୁ କହିଲା ''ସ୍ନେହମମତା ହିଁ ଦୁନିଆଁରେ ସବୁଠାରୁ ବଡ଼ ଦୌଲତ୍ । ଯାହାପାଖରେ

ଇତିହାସରେ ଆପଣ ଗୁଣ୍ଡୁଚିମୂଷା ସାଥିରେ ଯୁଦ୍ଧ କରିବାବାଲା ରାଜା ନାମରେ ପ୍ରସିଦ୍ଧ ହୋଇଯିବେ ଏବଂ ଉପହାସର ପାତ୍ର ହେବେ ।''

ରାଜା ବିବ୍ରତ ହୋଇ ପଚାରିଲେ, ''ତେବେ ମୁଁ କ'ଣ କରିବି ?'' ମନ୍ତ୍ରୀକହିଲେ, ''ଆପଣ ଗୁଣ୍ଡୁଚିମୂଷା ଉପରେ ଧ୍ୟାନ ଦିଅନ୍ତୁନି । ଆରମ୍ଭରୁ ଯେବେ ଗୁଣ୍ଡୁଚିମୂଷା ଫୁଟାଣି ମାରୁଥିଲା, ସେତେବେଳେ ଯଦି ଆପଣ କ୍ରୋଧ ନ କରି ତା କଥା ଶୁଣିଥାନ୍ତେ ତେବେ କଥା ଏତେ ଆଗକୁ ବଢ଼ି ନ ଥାନ୍ତା ।''



ତା ପରଦିନ ଗୁଣ୍ଡୁଚିମୂଷା ପୁଣି ଆସିଲା । ପ୍ରଥମଦିନର ଗୀତ ଗାଇବାରେ ଲାଗିଲା । ରାଜା ମୃଦୁ ମୃଦୁ ହସି ଗାଇବାରେ ଲାଗିଲେ -

''ଏହା ତ ସତ ଆରେ ପ୍ରିୟ ଗୁଣ୍ଡୁଚି ଦୌଲତ ର ରାଣୀ ତୁମେ,
କିଏ ଅବା ଏହା ନ ଜାଣେ ଯେ ସର୍ବଜ୍ଞାନୀ ଅଟ ତୁମେ ।''

ଗୁଣ୍ଡୁଚିମୂଷା ଆଶ୍ଚର୍ଯ୍ୟ ହୋଇଗଲା । କିଛି ନ କହି ସେ ସେଠାରୁ ପଳାଇଗଲା ଯେ ଆଉ କେବେ ଦେଖା ଦେଲାନି ।

हिन्दी से अनुवादः बिजय गोपाल ओझा

- ଭାରତର ଲୋକ କଥା



# ରାଜା ଏବଂ ଗୁଣ୍ଡୁଚିମୂଷା



ଏଇ ସମୟର କଥା । ଜଣେ ରାଜା ଥିଲେ । ସେ ବିଦ୍ୱାନ, ଶକ୍ତିଶାଳୀ ଏବଂ ଚତୁର ଥିଲେ ଏବଂ ଧନବାନ୍ ବି । ଦିନେ ବଗିଚାରେ ବୁଲୁବୁଲୁ ସେ ନିଜର ମନ୍ତ୍ରୀକୁ କହିଲେ, ''ମୋ ଆଗରେ କେହି ହେଲେ ନିଜର ପ୍ରଶଂସା କରିବାର ସାହାସ କରିବେନି, କାହିଁକି ନା ମୁଁ ହିଁ ସର୍ବଶ୍ରେଷ୍ଠ ଅଟେ ।''

ମନ୍ତ୍ରୀ ମନ୍ଦ ମନ୍ଦ ହସିଲେ ଏବଂ କହିଲେ, ''ମହାରାଜ, କ୍ଷମା କରନ୍ତୁ ! ପ୍ରତ୍ୟେକ ବ୍ୟକ୍ତିକୁ ନିଜ ଉପରେ ଗର୍ବ ଅନୁଭବ ହୋଇଥାଏ । ଦୁର୍ବଳବ୍ୟକ୍ତି ବି ନିଜକୁ ନିଜେ ବଳବାନ୍ ଭାବେ । ଯେଉଁଲୋକ ବଢ଼େଇ ଚଢ଼େଇ କହେ ଓ ଫୁଟାଣି ଦେଖାଏ ତାଙ୍କ ପ୍ରତି ଧ୍ୟାନ ନ ଦେବା ହିଁ ବୁଦ୍ଧିମାନୀ ଅଟେ । ଅନ୍ୟର ଗର୍ବ ଦେଖିକରି ନିଜ ମନର ଶାନ୍ତି ହରାଇବା ଉଚିତ୍ ନୁହେଁ ।''

ସେହି ସମୟରେ ସେଠାକୁ ଗୋଟିଏ ଗୁଣ୍ଡୁଚିମୂଷା ଆସିଲା । ତା'ର ପଞ୍ଝାରେ ଏକ ମୁଦ୍ରା ଥିଲା । ତାକୁ ଦେଖାଇକରି ଗାଇବାରେ ଲାଗିଲା-

ଶୁଣ ଶୁଣ ସବୁଲୋକ, ଦେଖ ଖେଳ ପଇସାର
ମୋର ଧନ ଦେଖି-ଦେଖି ରାଜା ହୁଏ ଈର୍ଷାପର



ରାଜା କ୍ରୋଧିତ ହୋଇ ଉଠିଲେ । ତାକୁ ଧରିବାକୁ ତା ପଛେ ପଛେ ଦୌଡ଼ିଲେ । ଗୁଣ୍ଡୁଚିମୂଷା ତ ବଞ୍ଚିଗଲା । ହେଲେ ତାର ମୁଦ୍ରାଟି ପଡ଼ିଗଲା । ରାଜା ତାକୁ ଉଠାଇନେଲେ -

ସେହିଦିନ ସଂଧ୍ୟାରେ ରାଜା ନିଜ ମହଲରେ ବସିଥିବା ଅତିଥିଗଣଙ୍କ ସାଥିରେ କଥାବାର୍ତ୍ତା କରୁଥିଲେ । ହଠାତ୍ ସେ ଗୁଣ୍ଡୁଚିମୂଷା ଆସିଲା ଏବଂ ଗାଇବାରେ ଲାଗିଲା ।

ଧନର ରାଣୀ ମୁଁ ଅଟେ, ସଭିଁଙ୍କୁ କହ ଏ କଥା
ମୋର ଧନକୁ ପାଇ, ଆଜି ଦେଖାଉଛୁ ଏ ରାଜା

ରାଜା ଚିଡିଗଲେ । କିନ୍ତୁ ଅତିଥିଙ୍କ ଆଗରେ କିଛି କରିପାରିଲେନି । ନିଜର କ୍ରୋଧ ନିଜ ଭିତରେ ଦବାଇ ରଖିଲେ । ତା ପରଦିନ ସକାଳେ ରାଜା ଗରିବମାନଙ୍କୁ ଦାନ ଦେଉଥିଲେ । ଗୁଣ୍ଡୁଚିମୂଷା ସେଠାକୁ ଆସିଲା ଏବଂ ଗାଇବାରେ ଲାଗିଲା -

କଣ କହିବି ? କେମିତି କହିବି ? ଏଇତ ବୁଝିବା କଥା
ଏହି ସବୁ ମୋର ଧନ ଯାହା, ଦାନଧର୍ମ କରେ ରାଜା

ରାଜା ନିଜର ସେବକମାନଙ୍କୁ କହିଲେ । ‘‘ଏ ଦୁଷ୍ଟ ଗୁଣ୍ଡୁଚିମୂଷାକୁ ଧରି ମୋ ପାଖକୁ ଆଣ ।’’ କିନ୍ତୁ ଗୁଣ୍ଡୁଚିମୂଷାକୁ ତ ଧରିବା ଅସମ୍ଭବ । ସେ ସେଠାରୁ ଖସି ପଳାଇଗଲା । କିଛି ସମୟପରେ ରାଜା ଖାଇବସିଲେ । ଗୁଣ୍ଡୁଚିମୂଷା ଝରକାରୁ ଝାଙ୍କି ଦେଖିଲା ଏବଂ ଗାଇଲା -

ମୋହରିଧନରେ ରାଜା ଲଗାଏ ଛତିଶ ଭୋଗ
କେତେ ମଜାର ଏ କଥା, ଆସ ଆସ ତୁମେ ଦେଖ

ରାଜା କ୍ରୋଧରେ ବିରକ୍ତ ହୋଇ ଖାଦ୍ୟ ପଦାର୍ଥ ଛାଡ଼ି ଉଠିଗଲେ । ରାତ୍ରିରଭୋଜନ ସମୟରେ ମଧ୍ୟ ଗୁଣ୍ଡୁଚିମୂଷା ସେଠାକୁ ଆସିଲା ଏବଂ ସେହିଗୀତ ଗାଇବାକୁ ଲାଗିଲା । ଏବେ ତ ରାଜାର କ୍ରୋଧ ସୀମା ଅତିକ୍ରମ କରିଗଲା । ସେ ମୁଦ୍ରାକୁ ବାହାର କରି ଗୁଣ୍ଡୁଚିମୂଷା ପାଖକୁ ଫିଙ୍ଗିଦେଲେ । ଗୁଣ୍ଡୁଚିମୂଷା ସେ ମୁଦ୍ରାକୁ ଉଠାଇନେଇ ଗାଇବାରେ ଲାଗିଲା ।

ମୁଁ ଜିତିଗଲି ଦେଖ ଲୋକସବୁ, ରାଜା ତ ଗଲେଣି ହାରି
ଡରି କରି ସେ ଲେଉଟାଇ ଦେଲେ ଏ ଦୌଲତ ମୋହରି



ରାଜା ପାଗଳ ପରି ଗୁଣ୍ଡୁଚିମୂଷାର ପଛେ ପଛେ ଦୌଡ଼ିବାକୁ ଲାଗିଲେ । କିନ୍ତୁ ସେ ଗୁଣ୍ଡୁଚିମୂଷା ଉଭେଇଗଲା । ରାଜା ସାରା ରାତି ଅଶାନ୍ତି ରେ କଟାଇଲେ । ସକାଳେ ଉଠି ରାଜା ମନ୍ତ୍ରୀଙ୍କୁ କହିଲେ, ‘‘ସେନା ପଠାଅ ଏବଂ ସବୁ ଗୁଣ୍ଡୁଛିମୂଷାଙ୍କୁ ମାରିଦିଅ ।’’

ମନ୍ତ୍ରୀ କହିଲେ, ‘‘ମୁଁ ଆପଣଙ୍କର କ୍ରୋଧ କୁ ବୁଝିପାରୁଛି । କିନ୍ତୁ କ୍ଷେତରେ, ବଣଜଙ୍ଗଲ, ପାହାଡରେ ଲକ୍ଷ ଲକ୍ଷ ଗୁଣ୍ଡୁଚିମୂଷା ରହନ୍ତି । ସେମାନଙ୍କୁ ଧରିବା ଏତେ ସହଜ ନୁହେଁ । ସେମାନଙ୍କୁ ସବୁ ଧରିନେଲେ ବି ପଡୋଶୀଦେଶରୁ ଗୁଣ୍ଡୁଚିମୂଷାବି ଆମ ଦେଶକୁ ଆସିପାରନ୍ତି । ଆପଣ ଯେବେ ନିଜର ସାହସୀ ସୈନିକମାନଙ୍କୁ ଗୁଣ୍ଡୁଚିମୂଷାଙ୍କ ସାଥିରେ ଲଢିବାକୁ କହିବେ ସେମାନେ ନିରାଶ ଓ ଦୁଃଖିହୋଇଯିବେ ନି ? ଖାଲି ଏ ବି ନୁହେଁ, ସାରା

# ଗୋଟିଏ ବୁନ୍ଦା



ପାଣିର ଗେଟିଏ ବୁନ୍ଦା ସୂର୍ଯ୍ୟଙ୍କର କିରଣକୁ ଦେଖି ଭାବିଲା, ''ଓଃ ! ମୁଁ ସତରେ କ'ଣ ଏ କିରଣ ପାଖକୁ ଯାଇପାରିବି !'' ସେ ଅନ୍ୟ ବୁନ୍ଦା ମାନଙ୍କୁ ସେଠାକୁ ଯିବାର ଉପାୟ ପଚାରିଲା ।

ଅନ୍ୟ ବୁନ୍ଦାଟି କହିଲା, ''ବାଷ୍ପୀଭୁତ ହୋଇ ସେଠାକୁ ଯାଇପାରିବ । କିନ୍ତୁ ଆମେ ଏ ମାଠିଆରେ ହିଁ ସୁରକ୍ଷିତ ରହିବା ।''

କିନ୍ତୁ ଛୋଟ ବୁନ୍ଦାଟି କୌଣସି ଉପାୟରେ ଚେଷ୍ଟାକରି ବାହାରକୁ ବାହାରିବାକୁ ଚାହୁଁଥିଲା । ସେ ମାଠିଆର ମୁହଁତକ ପହଞ୍ଚି ଏବଂ କୁଦା ମାରି ମାଠିଆର ବାହାରକୁ ବାହାରିଗଲା ।

କିଛିକ୍ଷଣ ପାଇଁ ବୁନ୍ଦାଟି ଡରିଗଲା । କିନ୍ତୁ ଯେମିତି ସୂର୍ଯ୍ୟଙ୍କୁ ଦେଖିଲା ସେମିତି ତା'ର ଭୟ ଦୂରେଇଗଲା । ବାଷ୍ପୀଭୁତ ହୋଇ ଉପରକୁ ଗଲାବେଳେ ତାକୁ ବହୁତ ଭଲ ଲାଗୁଥିଲା ।

ତାକୁ ତୁଳା ପରି ଧଳା ବଉଦ ଦେଖା ଗଲା । ସେ ବଉଦ ଅନ୍ୟ ବାଷ୍ପୀଭୁତ ବୁନ୍ଦାରେ ହିଁ ବନିଥିଲେ । ଛୋଟ ବୁନ୍ଦାଟି ସେ ସବୁ ବୁନ୍ଦାଙ୍କୁ କିରଣ ପାଖକୁ ଯିବାର ରାସ୍ତା ପଚାରିଲା ।

ତାକୁ କେତେ ପ୍ରକାରର ଉତ୍ତର ମିଳିଲା, ''ମୋତେ ଜଣା ନାହିଁ, ବୁଲିକରି ଯାଅ, ଏବଂ ଉପରକୁ ଯାଅ ।'' ବୁନ୍ଦାଟି କେତେଦିନ ଧରି ଏମିତି ବାଟବଣା ହୋଇ ବୁଲୁଥିଲା ।















ଛୋଟ ବୁନ୍ଦାଟିର ଆଖପାଖରେ ହାଲୁକା ବଉଦ ସବୁ ଏକାଠି ହେବାରେ ଲାଗିଲା । ବୁ ନ୍ଦାଟିକୁ ଜଣାଥିଲା ତାକୁ କଣ ଏବେ କରିବାକୁ ପଡ଼ିବ । ସେ ବଉଦର ମଝିକୁ ଚିରି ବାହାରି ବହୁତ ଉଚ୍ଚକୁ ଚାଲିଗଲା ଓ ବିଚ୍ଛୁରିତ ହୋଇଗଲା ।

ବୁନ୍ଦାଟି ବୁଝିପାରିଲା କି ସେ ସ୍ୱତନ୍ତ୍ର ଅଟେ ।

- କ୍ରିଷ୍ଟୋଫର ଇ. ଜୋନ୍‌ସ ଙ୍କ କାହାଣୀ
''ୱାନ ଡ୍ରପ୍ ଅଫ୍ ୱାଟର'' ଉପରେ ଆଧାରିତ

हिन्दी से अनुवादः बिजय गोपाल ओझा



कथा झरना
चित्रांकनः एस.पी. राजू



अमेरिका इंडिया फाउंडेशन के लिए एकलव्य द्वारा प्रकाशित

Chatnath Trust



ଦିନେ ସେ ଏକ ବିଚିତ୍ର ପ୍ରକାରର ବଉଦ କୁ ଦେଖିଲା । ବଉଦଟି ବଡ଼ , କଳା ଏବଂ ଭାରୀ ଥିଲା । ଛୋଟ ବୁନ୍ଦାଟି ଡେଇଁପଡ଼ି ସେ ବଉଦ ଭିତରେ ପଶିଗଲା ।

ସେହି ରାତିରେ ବଉଦଟି ଅଶାନ୍ତ ଥିଲା । ସେ ଏପଟୁ ସେପଟକୁ ମାଡ଼ି ଚାଲୁଥିଲା । ବିଜୁଳି ଚମକୁଥିଲା । ବୁନ୍ଦାଟି ବୁଝିପାରିଲା ଯେ ସେ ଭୁଲରେ ଏ ବଉଦ ଭିତରେ ପଶିଯାଇଛି ।

ଯେତେ ଯେତେ ପବନ ସାଇଁ ସାଇଁ କରି ବହିଲା ଏବଂ ବିଜୁଳି ଚମକିଲା, ତୀବ୍ର ଗତିରେ ସେ ଛୋଟ ବୁନ୍ଦାଟି ତଳକୁ ଯିବାକୁ ଲାଗିଲା । ଛଟପଟ ହୋଇ ସେ ଦରିଆ ଭିତରେ ପଡ଼ିଗଲା ।

ବୁନ୍ଦାଟି ଭାବିଲା, ‘ଆରେ ! ମୁଁ ତ ସୂର୍ଯ୍ୟଙ୍କର କିରଣ ପାଖକୁ ଯିବାକୁ ଚାହିଁଥିଲି, କିନ୍ତୁ ଏଠି ଆସି କେମିତି ପହଞ୍ଚିଗଲି ?’ ଦରିଆର ସ୍ରୋତ ତାକୁ ବଡ଼ ବଡ଼ ଗୁମ୍ଫା, ଚଟାଣ ଏବଂ ବୃକ୍ଷର ଶାଖା ମଧ୍ୟ ଦେଇ ବହୁତ ଦୂରକୁ ନେଇଗଲା ।

ଧୀରେ ଧୀରେ ଦରିଆର ଗତି କମିଗଲା । ଛୋଟ ବୁନ୍ଦାଟି ପଚାରିଲା ‘‘ଏ ଦରିଆ କୁଆଡ଼େ ଯାଉଛି ?’’ ତାକୁ ଉତ୍ତର ମିଳିଲା, ‘‘ଏହା ନଦୀରେ ଯାଇଁ ମିଶିବ ।’’ ଛୋଟ ବୁନ୍ଦାଟିକୁ ଏ ଯାତ୍ରା ସମୟରେ ବହୁତ ମଜା ଲାଗୁଥିଲା । ଦରିଆର ଦୁଇଧାରରେ ବଡ ବଡ ଗଛ ଲାଗିଥିଲା । କେଉଁଠି କେଉଁଠି ସୂର୍ଯ୍ୟଙ୍କର କିରଣ ପାଣିରେ ଚମକୁଥିଲା ।

ବୁନ୍ଦାଟି ସୁଅର ତୀବ୍ର ଗତିରେ ବହି ବହି ଯାଇ ନଦୀରେ ମିଳିଲା । ନଦୀର ପ୍ରଖର ସ୍ରୋତ ତାକୁ ବହୁତ ପସନ୍ଦ ଆସିଲା । କିନ୍ତୁ ସେ ବିଶାଳ ସମୁଦ୍ରର ଆକର୍ଷଣ ଅନୁଭବ କଲା ଏବଂ ତା ପାଖକୁ ଯିବାରେ ଲାଗିଲା ।

କିଛିକ୍ଷଣ ପରେ ସେ ସମୁଦ୍ରର ମଝିରେ ପହଞ୍ଚିଗଲା । ବୁନ୍ଦାଟି ଆକାଶକୁ ଚାହିଁଲା । ତାକୁ ତୁଳା ପରି ଧଳା ବାଦଲ ଦେଖାଗଲା । ବୁନ୍ଦାଟିର ସେହି ବାଦଲର କଥା ମନେପଡ଼ିଗଲା ସେ ଯାହା ଭିତରେ ପ୍ରଥମେ ପ୍ରବେଶ କରିଥିଲା ।

ବୁନ୍ଦାଟି ବଉଦରୁ ଦୃଷ୍ଟି ହଟାଇ ସୂର୍ଯ୍ୟଙ୍କୁ ଦେଖିବାରେ ଲାଗିଲା । ଏବେ ସେ ବୁଝିପାରିଲା ତାକୁ କଣ କରିବାକୁ ପଡ଼ିବ । କୂଳକୁ ଗଲା ଏବଂ ଉଚ୍ଛୁଳି ଛିଟିକି ପଡ଼ିଗଲା । ବାଷ୍ପୀଭୁତ ହୋଇ ପୁଣି ଉପରକୁ ଯିବାରେ ଲାଗିଲା । ଆକାଶରେ ତାକୁ ସବୁ ସଫା ଦେଖାଗଲା । ଦିନରେ ସୂର୍ଯ୍ୟ ଓ ରାତିରେ ତାରା । ଛୋଟ ବୁନ୍ଦାଟି ତଳକୁ ଚାହିଁଲା ଯେଉଁ ସମୁଦ୍ରରୁ ସେ ଉପରକୁ ଆସିଲା, ଯେଉଁ ନଦୀ ତାକୁ ଭସାଇ ଆଣିଲା ଆଉ ଯେଉଁ ଦରିଆରେ ସେ ପଡ଼ିଥିଲା, ସବୁକିଛି ତାକୁ ସଫା ସଫା ଦେଖାଗଲା ।

ତାଙ୍କ ମଧ୍ୟରୁ ଜଣେ କହିଲା, ‘‘ଆରେ ! ସେ ଶକ୍ତିଶାଳୀ ବ୍ୟକ୍ତିଙ୍କୁ ଦେଖ । ସେ ଗଛକୁ ବି ଉପାଡ଼ି ଆଣିଛି । ଆମ ସହ ଯୁଦ୍ଧ କରିବାକୁ ଆସୁଛି । ନିଶ୍ଚୟ ଏ ସେହି ବ୍ୟକ୍ତି ଯେ ବାଘ ପିଠିରେ ବସି ଯାତ୍ରା କରିଥିଲେ ।’’ ସେମାନେ ସମସ୍ତେ ପ୍ରାଣ ବିକଳ ରେ ଦୌଡ଼ି ପଳାଇଲେ ।

କିଛିକ୍ଷଣପରେ ଘୋଡାଟି ହଠାତ୍ କରି ଛିଡ଼ାହୋଇଗଲା । ଦଉଡ଼ି ଛିଡ଼ିଗଲା ଏବଂ ଭୋଳନାଥ ତଳେ ପଡ଼ିଗଲା । ସୌଭାଗ୍ୟବସତଃ ସେତେବେଳେ ସେଠି କେହି ନ ଥିଲେ । ଭୋଳନାଥ ନିଜକୁ ନିଜେ କହିଥିଲା, ‘‘ଭଗବାନଙ୍କୁ ଅଶେଷ ଧନ୍ୟବାଦ୍ । ମୋ ପ୍ରାଣ ବଂଚିଗଲା ।’’ ସେ ଘୋଡ଼ାକୁ ନେଇ ଘର ଆଡ଼କୁ ଚାଲିଲା । ସେ ବା କେମିତି ଏବେ ଘୋଡ଼ା ଉପରେ ବସି ଯାଇଥାନ୍ତା !

ଲୋକମାନେ ତାଙ୍କୁ ଚାଲି ଚାଲି ଆସିବାର ଦେଖିଲେ । ଆଶ୍ଚର୍ଯ୍ୟ ହୋଇ କହିଲେ, ‘‘ଦେଖ ! ଏକା ହିଁ ସେ ସବୁ ଶତ୍ରୁମାନଙ୍କୁ ପରାସ୍ତ କରିଦେଲେ । ଏତେ ବଡ କାମ କରିବା ପରେ ବି ସେ ଏକ ସାଧାରଣ ମଣିଷ ପରି ଚାଲି ଚାଲି ଆସୁଛନ୍ତି ।’’ କେଡ଼େ ମହାନ୍ ଅଟନ୍ତି ଭୋଳନାଥ !

हिन्दी से अनुवादः बिजय गोपाल ओझा

- ଭାରତର ଲୋକକଥା



# ବାଘ ଉପରେ ବସି ଯାତ୍ରା



ସେ ଦିନ ଜଙ୍ଗଲରେ ଭାରି ବର୍ଷା ହେଉଥିଲା । ଚାରି ଦିଗ ଘନ ଅନ୍ଧକାରରେ ଢାଙ୍କି ହୋଇଥିଲା । କେତେବେଳେ ବିଜୁଳି ଚମକୁଥାଏ । ତୋଫାନ ବହୁତ ଜୋର୍‌ଥିଲା । ତୋଫାନ ରେ ବହୁତ ଗଛ ଉପୁଡ଼ିଯାଇଥିଲା । ଗୋଟିଏ ବାଘ ଭୟଭୀତ ହୋଇ ଜଙ୍ଗଲରେ ଦୌଡ଼ି ପଳାଇବାକୁ ଲାଗିଲା । ସେ ପାଖରେ ଥିବା ଗୋଟିଏ ଗାଁରେ ପହଁଚିଲା ଏବଂଗୋଟିଏ କୁଟୀରର କାନ୍ଥକୁ ଡେରି ହୋଇ ଛଡ଼ାହେଲା ।



କୁଟୀର ଭିତରେ ଗୋଟିଏ ସ୍ତ୍ରୀ ଲୋକଟି ନିଜକୁ ନିଜେ କହୁଥିଲା, ‘‘ମାତ୍ର ଦୁଇଦିନ ପାଇଁ ଆରାମ୍ ମିଳିଲା । ଏ ଟପ୍ ଟପ୍ ବର୍ଷା ପୁଣି ଆସିଗଲା ।’’ ବର୍ଷା ଯୋଗୁଁ ତା’ର କୁଡ଼ିଆରେ ପାଣି ପଡୁଥିଲା । ତାକୁ ଟେବୁଲ୍, ବାକ୍ସ, ବାସନକୁସନ କୁ ଏପଟ ସେପଟ ଘୁଞ୍ଚାଇବାକୁ ପଡୁଥିଲା । ଢୁମ୍...ଢାମ୍... ଢୁମ୍...ଢାମ୍ କରି ବାସନ କୁସନ ପରସ୍ପର ସହ ବାଜିବାର ଶବ୍ଦ ଶୁଣାଯାଉଥିଲା, ଯାହାଦ୍ୱାରା କାନ୍ଥ ମଧ୍ୟ ହଲୁଥିଲା ।

ବାଘ ଡରିଗଲା । 'ଟପ୍ ଟପ୍ ! ଏହା କ'ଣ ଅଟେ ? ଯେବେ ଏହାର ଶବ୍ଦ ଏତେ ଭୟାନକ ତେବେ ସେ ନିଶ୍ଚୟ ଭୟଙ୍କର ହୋଇଥିବ,' ବାଘ କିଛି ବୁଝିପାରୁନଥିଲା ।

ସେତେବେଳେ ଗାଁର ଭୋଳନାଥ ନିଜ ଗଧକୁ ଖୋଜି ଖୋଜି ସେଠାରେ ପହଞ୍ଚିଲା । ସେ ବୁଢୀ ଘର କାନ୍ଥକୁ ଲାଗି ଛିଡ଼ାହୋଇଥିବା ପଶୁକୁ ଦେଖିଲା । ଘନ ଅନ୍ଧକାରରେ ତାକୁ ଲାଗିଲା ଯେପରି ସେ ଯନ୍ତୁଟି ତା'ର ଗଧ ଅଟେ । ସେ ରାଗରେ ତା'କାନ ଟାଣି ଚିତ୍କାର କରି କହିଲା, ''କ'ଣ ତୋ'ର ମଥା ଖରାପ ହୋଇଗଲାଣି ? ଏ ବର୍ଷାରେ ମୁଁ ତୋତେ କୁଆଡ଼େ କୁଆଡ଼େ ଖୋଜିବୁଲିବି ? ଚାଲ୍, ଏବେ ଚୁପ୍ ଚାପ୍ ଘରକୁ ଚାଲ ।'' ସେ ବାଘ ଉପରେ ଚଢି ବସିଗଲା ଏବଂ ବାଘ ପିଠିରେ ବସି ଆଗକୁ ବଢ଼ିଲା ।

ଆଜି ପର୍ଯ୍ୟନ୍ତ ବାଘର କାନକୁ କେହି ଏମିତି ମୋଡ଼ି ନ ଥିଲେ । ବାଘ ଡରି କମ୍ପିବାକୁ ଲାଗିଲା । ଟପ୍ ଟପ୍ ବର୍ଷା ଡରରେ ସେ କିଛି କହି ନ ଥିଲା । ଚୁପ୍ ଚାପ୍ ଚାଲିବାକୁ ଲାଗିଲା । ଘର ପହଞ୍ଚି ଭୋଳନାଥ ତାକୁ ଦଉଡ଼ିରେ ବାନ୍ଧିଦେଲା ଏବଂ ଘର ଭିତରେ ଶୋଇବାକୁ ଲାଗିଲା ।

ତା'ପର ଦିନ ସକାଳ ହେବାରୁ ଭୋଳନାଥର ସ୍ତ୍ରୀ ବାହାରକୁ ଆସିଥିଲେ । ଘର ଆଗରେ ବନ୍ଧାହୋଇଥିବା ବାଘକୁ ଦେଖି ସେ ଜୋର୍‌ରେ ଚିତ୍କାର କରିଥିଲେ । ଚିତ୍କାର ଶୁଣି ଭୋଳନାଥ ଦୌଡ଼ି ଆସିଥିଲା ।

ବାଘକୁ ଦେଖି ସେ ବି ଚିତ୍କାର କରି ଘରଭିତରକୁ ପଶିଗଲା । କବାଟ ଭିତର ପଟରୁ ବନ୍ଦ କରିନେଲା ।

ଗାଆଁର ଲୋକମାନେ ଭୋଳାର ଘର ଆଗରେ ବନ୍ଧାହୋଇଥିବା ବାଘକୁ ଦେଖି ଚାରିଆଡ଼କୁ ଦୌଡ଼ିବାକୁ ଲାଗିଲେ । ଏ ଝମେଲାରେ ଆଚମ୍ଭିତ ବାଘ ଦଉଡ଼ିକୁ କାଟିଦେଲା ଏବଂ ପ୍ରାଣ ବିକଳରେ ଜଙ୍ଗଲ ଭିତରକୁ ଦୌଡ଼ି ପଳାଇଲା ।



'ଭୋଳନାଥ ବାଘ ପିଠିରେ ବସି ଆସିଥିଲା ।' ଏ ଖବର ଗାଁରେ ଚାରିଆଡ଼େ ବ୍ୟାପିଗଲା । ସମସ୍ତେ ତାଙ୍କୁ ମିଳିବାକୁ ଆସିଥିଲେ । ଆଶ୍ଚର୍ଯ୍ୟ ର ସହ ତାଙ୍କୁ ପଚାରିବାକୁ ଲାଗିଲେ, ''ଶୁଣିଲୁ କି ତୁମେ ବାଘ ଉପରେ ବସି ଆସିଥିଲ !''

ଭୋଳନାଥ ଗର୍ବର ସହିତ କହିଲେ, ''ଖାଲି ବାଘ ଉପରେ ବସି ଆସି ନଥିଲି ବରଂ ତା'ର କାନ ମୋଡିଥିଲି ।'' ଏ ଖବର ରାଜା ଙ୍କ କାନରେ ପଡ଼ିଲା । ରାଜା ଭୋଳନାଥକୁ ସମ୍ମାନିତ କରି ପୁରସ୍କାର ଦେଲେ ।

କେତେମାସ ବିତିଗଲା । ଶତ୍ରୁଦେଶର ସୈନିକ ରାଜ୍ୟ ଉପରେ ଆକ୍ରମଣ କରିଦେଲେ । ରାଜା ଶୀଘ୍ର ମନ୍ତ୍ରୀଙ୍କୁ ଆଦେଶ ଦେଲେ, ''ଯେଉଁ ବାହାଦୂର ବ୍ୟକ୍ତି ଟି ବାଘ ଉପରେ ବସି ଯାତ୍ରା କରିଥିଲେ, ତାଙ୍କୁ ଶୀଘ୍ର ଶତ୍ରୁଙ୍କ ସହ ମୁକାବିଲା କରିବାକୁ ପଠାଯାଉ । ସେ ଶତ୍ରୁମାନଙ୍କୁ ଧ୍ଵଂସ କରିଦେବେ । ଯାଅ ଏବଂ ତା'କୁ ଏ ଶକ୍ତିଶାଳୀ ଘୋଡ଼ା ଦେଇଦିଅ ।''

ଭୋଳନାଥ ରାଜାଙ୍କ ଆଦେଶ ଶୁଣି ହଇରାଣରେ ପଡ଼ିଗଲା । ସେ ଭାବିଲା, 'ଏବେ କିଛି ରାସ୍ତାନାହିଁ । ମୋତେ ଯୁଦ୍ଧ କରିବାକୁ ଯିବାକୁ ପଡିବ ।' ସେ ପୂର୍ବରୁ କେବେ ଘୋଡ଼ାରେ ବସି ଯାଇନଥିଲେ । ମୁସ୍କିଲରେ ଘୋଡ଼ା ଉପରେ ବସି ତାଙ୍କ ପତ୍ନୀଙ୍କୁ କହିଲେ, ''ଘୋଡ଼ା ଉପରେ ପଡ଼ିଯିବା ପୂର୍ବରୁ ମୋତେ ଘୋଡ଼ା ଉପରେ ବାନ୍ଧିଦିଅ ।'' ତାଙ୍କ ପତ୍ନୀ ତାଙ୍କର ହାତ, ଗୋଡ଼ ଏବଂ ପୂରା ଶରୀରକୁ ଘୋଡ଼ା ସହିତ କସିକରି ବାନ୍ଧିଦେଲେ । ଘୋଡ଼ା ତୀବ୍ର ବେଗରେ ଦୌଡ଼ିବାକୁ ଲାଗିଲା । ଖେତ, ନଦୀ ପାର କରି ସେ ଶତ୍ରୁ ସେନାଙ୍କ ଆଡକୁ ଦୌଡ଼ିଲା ।

''ହାୟରେ ! ସେ ପଟକୁ ଯାଅନାହିଁ !'' ଭୋଳନାଥ ଜୋର୍‌ରେ ଚିତ୍କାର କରି ଉଠିଲା । ସେ ବୁଝିପାରି ନ ଥିଲା ଘୋଡ଼ାକୁ କେମିତି ଅଟକାଇବ ? ଭୟରେ ସେ ତାଙ୍କ ଦୁଇ ହାତକୁ ଉଠାଇ ଗୋଟିଏ ଗଛର ଶାଖାକୁ ଧରିପକାଇଲେ । କିନ୍ତୁ ଘୋଡ଼ାଟି ଦୌଡ଼ିବାରେ ଲାଗିଲା । ମାଟି ଓଦା ହେବା ହେତୁ ଗଛଟି ଉପାଡ଼ି କରି ଭୋଳନାଥଙ୍କ ହାତରେ ଆସିଗଲା ।

ଶତ୍ରୁମାନେ ଦେଖିଲେ କି ଗୋଟିଏ ବଡ଼ ଗଛକୁ ହାତରେ ବୁଲାଇ ବୁଲାଇ ତୀବ୍ର ଗତିରେ ଭୋଳନାଥ ତାଙ୍କ ଆଡକୁ ଆସୁଛନ୍ତି ।

# ବାହାଦୁରୀ ର ପରୀକ୍ଷା



ଜାପାନ ଦେଶରେ ଗୋଟିଏ ଅସାଧାରଣ ବିଦ୍ୟାଳୟ ଥିଲା । ଏହାର ଶ୍ରେଣୀ ସବୁ ରେଳ ଡବା ରେ ଥିଲା । ବିଦ୍ୟାଳୟର ଚାରିପାଖରେ ଗୋଟିଏ ବଡ ବଗିଚା ଘେରି ରହିଥିଲା । 'ତୋତୋ-ଚାନ' ନାମକ ଗୋଟିଏ ବାଳିକା ଏହି ବିଦ୍ୟାଳୟ ରେ ପଢୁଥିଲା ।

ଥରେ ତୋତୋ-ଚାନ ର ବିଦ୍ୟାଳୟରେ ଗୋଟିଏ ଶିବିର ଲାଗିଲା । ସଭା ଗୃହରେ ତମ୍ବୁ ଲଗାଗଲା ଏବଂ ସବୁ ପିଲାମାନେ ରାତିରେ ସେଇଠି ରହିଲେ । ପ୍ରଧାନ ଶିକ୍ଷକ ଗୋଟିଏ ଘୋଷଣା କଲେ, ''ଆମେ ଗୋଟିଏ ରାତିରେ ବାହାଦୁରୀର ପରୀକ୍ଷା ନେବୁ । ଏହା 'କୁହୋନ୍ ବୁସ୍ତୁ' ମନ୍ଦିରରେ ହେବ । ଯେଉଁ ପିଲାମାନେ ଭୂତ ବନିବାକୁ ଚାହାଁନ୍ତି, ସେମାନେ ନିଜ ହାତ ଉଠାନ୍ତୁ ।''

ସାତ ଜଣ ବାଳକ ଭୂତ ବନିବାକୁ ଆଗେଇ ଆସିଥିଲେ । ନିର୍ଦ୍ଦିଷ୍ଟ ସନ୍ଧ୍ୟା ବେଳେ ପିଲାମାନେ ବିଦ୍ୟାଳୟରେ ଏକତ୍ରିତ ହୋଇଗଲେ । ଭୂତ ବନିବା ପାଇଁ ପିଲାମାନେ ସାଥିରେ ପୋଷାକ ଆଣିଥିଲେ । ପ୍ରସ୍ତୁତ ହୋଇ ସେମାନେ ମନ୍ଦିର ବଗିଚାରେ ଯାଇ ଛୁପିଲେ ।

''ଆମେ ତୁମ୍ଭମାନଙ୍କୁ ଏତେ ଡରାଇବୁ ଯେ ବୁଦ୍ଧି-ଶୁଦ୍ଧି ହରାଇ ବସିବ ।'' ସେମାନେ ଯାଉ ଯାଉ କହିଲେ । ବାକି ତିରିଶ ପିଲାମାନେ ପାଞ୍ଚ-ପାଞ୍ଚ ଜଣ ଛୋଟ ଦଳରେ ବାଣ୍ଟି ହୋଇଗଲେ । କିଛି କିଛି ସମୟ ଅନ୍ତରାଳରେ ମନ୍ଦିର ଆଡକୁ ଚାଲିଲେ । ସେମାନଙ୍କୁ ପ୍ରଥମେ ମନ୍ଦିର ଏବଂ ପୁଣି ଶ୍ମଶାନ ର ଚାରିପାଖ ଘୁରି ବିଦ୍ୟାଳୟ ପହୁଞ୍ଚିବାର ଥିଲା ।

ଆଣିଥିଲେ । ସବୁ ପିଲାମାନେ ତାକୁ ଚୁପ୍ କରାଇବାକୁ ଚେଷ୍ଟା କରୁଥିବାବେଳେ ଆହୁରି ଗୋଟିଏ ଭୂତ କାନ୍ଦି କାନ୍ଦି ଗୋଟିଏ ବାଳକ ସହ ପହଞ୍ଚିଲା । ଏ ଭୂତ ଶ୍ମଶାନରେ ଲୁଚିକରି ଥିଲା । ହଠାତ୍ କାହାର ଦୌଡିବାର ଶବ୍ଦ ଶୁଣାଯାଇଥିଲା । ସେ ଡିଆଁମାରି ତାକୁ ଡରାଇବାକୁ ବାହାରକୁ ବାହାରିଲା । ଦୁଇ ଜଣଙ୍କ ମଧ୍ୟରେ ଧକ୍କା ହେଲା । ଯନ୍ତ୍ରଣା ଏବଂ ଭୟରୁ ଦୁଇଜଣ ଦଉଡିକରି ଏକ ସାଥିରେ ଫେରିଥିଲେ । ପିଲାମାନଙ୍କୁ ସେମାନଙ୍କ କଥା ଏତେ ମଜା ଲାଗିଲା କି ସେମାନଙ୍କ ଡର କମି ଆସିଥିଲା ଏବଂ ସେମାନେ ଜୋର୍ ଜୋର୍ ରେ ହସିବାକୁ ଲାଗିଲେ । ଭୂତମାନେ କେବେ ହସୁଥିଲେ, କେବେ କାନ୍ଦୁଥିଲେ ।

କିଛି ସମୟପରେ ତୋତୋ-ଚାନ୍ ର ଜଣେ ସହପାଠୀ ଫେରିଥିଲେ । ସେ ଖବରକାଗଜରେ ତିଆରିହୋଇଥିବା ଟୋପି ପିନ୍ଧିଥିଲା । ସେ ବହୁତ ନାରାଜ ଥିଲା କାରଣ ତା' ପାଖରେ କେହି ହେଲେ ପହଞ୍ଚି ନ ଥିଲେ । ସେ ଅଭିଯୋଗ କରି କହିଲା, ''ମୁଁ ଏତେ ଡେରି ପର୍ଯ୍ୟନ୍ତ ଅପେକ୍ଷା କରିଥିଲି ।'' ତା'ର ହାତଗୋଡ଼କୁ ମଶା କାଟୁଥିଲେ ଏବଂ ସେ କୁଣ୍ଡେଇ ହେଉଥିଲା ।



କେହି କହିଥିଲା, ''ଆରେ ଦେଖ ! ମଶା କାଟିଥିବା ଭୂତ !'' ସମସ୍ତେ ପୁଣି ହସିବାକୁ ଲାଗିଲେ । ''ଏବେ ମୁଁ ଯାଇ ବାକି ଭୂତଙ୍କୁ ଆଣୁଛି,'' ପଞ୍ଚମ ଶ୍ରେଣୀର ଶିକ୍ଷକ କହିଥିଲେ । ତାଙ୍କୁ କେତେ ଭୂତ ସଡକ ବତୀ ତଳେ ମିଳିଥିଲେ । ଜଣାପଡିଲା କି କିଛି ମଧ୍ୟ ଡରି କରି ଘରକୁ ଚାଲିଯାଇଥିଲେ । ସେ ସମସ୍ତଙ୍କୁ ଏକତ୍ରିତ କରି ବିଦ୍ୟାଳୟକୁ ନେଇଆସିଥିଲେ । ସେହି ରାତିପରଠାରୁ ସେ ପିଲାମାନେ ଭୂତଙ୍କୁ କେବେ ଡରି ନ ଥିଲେ । ଶେଷରେ ଭୂତ ସ୍ୱୟଂ ବି ତ ଡରିଯାଆନ୍ତି !

- ତେତ୍ସୁକୋ କୁରୋୟାଙ୍ଗ

हिन्दी से अनुवादः बिजय गोपाल ओझा

ପ୍ରଧାନ ଶିକ୍ଷକ ବୁଝାଇଲେ, ‘‘ବାହାଦୁରୀ ର ପରୀକ୍ଷା ଅଟେ ଏ ନିଶ୍ଚିତ, କିନ୍ତୁ ଯଦି କେହିପିଲା ଏହା ପୂରା ନ କରି ବିଦ୍ୟାଳୟ ଫେରିବାକୁ ଚାହିଁବ ତ ଫେରିପାରିବ ।’’ ତୋତୋ-ଚାନ ମାଁ’ଙ୍କ ଠାରୁ ଟର୍ଚ୍ଚ ମାଗି କରି ନେଇଥିଲା । କିଛି ବାଳକମାନେ କହିଲେ କି ସେମାନେ ଭୂତକୁ ଧରିବେ । ସେଥିପାଇଁ ସେମାନେ ପ୍ରଜାପତି ଧରିବାର ଜାଲ ଆଣିଥିଲେ । ଅନ୍ୟମାନେ କହିଲେ କି ସେମାନେ ଭୂତମାନଙ୍କୁ ବାନ୍ଧିଦେବେ, ସେଥିପାଇଁ ସେମାନେ ସାଥିରେ ଦଉଡ଼ି ଆଣିଥିଲେ ।



ଯେ ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ସବୁ କଥା ବୁଝାଇଲେ ଏବଂ ପିଲାମାନଙ୍କ ଦଳ ବନିଲା, ସେତେ ବେଳକୁ ଅନ୍ଧାର ହୋଇ ଆସିଥିଲା । ପିଲାମାନେ ଉତ୍ସାହ ର ସହିତ କୋଳାହଳ କରି ବିଦ୍ୟାଳୟର ଦରବାଜା ଦେଇ ବାହାରିଲେ । ଶେଷରେ ତୋତୋ-ଚାନ୍ ଙ୍କ ଦଳ ବାହାରକୁ ଆସିବାର ସମୟ ଆସିଲା ।

ପ୍ରଧାନ ଶିକ୍ଷକ କହିଲେ କି ଯେ ପର୍ଯ୍ୟନ୍ତ ସେ ମନ୍ଦିର ପହଞ୍ଚି ଯାଇ ନାହାନ୍ତି, ସେ ପର୍ଯ୍ୟନ୍ତ ଭୂତ ପ୍ରକଟ ହେବେ ନାହିଁ । କିନ୍ତୁ ପିଲାମାନଙ୍କୁ ଏହି କଥାରେ ଭରସା ନ ଥିଲା । ସେମାନେ ଡରି ଡରି ମନ୍ଦିର ର ଦରବାଜା ପର୍ଯ୍ୟନ୍ତ ପହଞ୍ଚିଲେ । ଦେବ-ରାଜାଙ୍କ ବଡ ମୂର୍ତ୍ତିସବୁ ଦ୍ୱାରପାଳ ଭଳି ଦିଶିଲେ ।



ଚନ୍ଦ୍ରକିରଣଭରା ରାତି ଥିଲା । କିନ୍ତୁ ମନ୍ଦିରର ପଡ଼ିଆରେ ବହୁତ ଅନ୍ଧାର ଥଲା । ଦିନରେ ଏହି ଜାଗାଟି ପିଲାମାନଙ୍କୁ ଭଲ ଲାଗେ । କିନ୍ତୁ ରାତିରେ, ବିଶେଷକରି ସେହି ରାତିରେ, ସେମାନଙ୍କୁ ସେ ଜାଗା ଭୟଙ୍କର ଲାଗୁଥିଲା । ପବନ ଦ୍ୱାରା ଗଛର ସରସର ଶବ୍ଦ ଆରମ୍ଭ ହୋଇଗଲା । କେହି ପିଲାଟିଏ ‘ଉ-ଇ-ଇ’ କହିକରି ଚିଲାଇଥିଲା । ଅନ୍ୟକାହାର ପାଦ ଏକ କୋମଳ ଜିନିଷ ଉପରେ ପଡ଼ିଲା ଏବଂ ସେ ‘‘ଭୂତ ଆସିଲା’’ ବୋଲି ଚିତ୍କାର କରି ଉଠିଲା । ଡର ଏମିତି ବ୍ୟାପିଯାଇଥିଲା କି ସାଙ୍ଗର ହାତ ଭୂତର ହାତ ଭଳି ଲାଗିଲା ।



ତୋତୋ-ଚାନ୍ ନିଶ୍ଚୟ କଲା କି ସେ କୌଣସି ଅବସ୍ଥାରେ ଶ୍ମଶାନ ପର୍ଯ୍ୟନ୍ତ ଯିବ ନାହିଁ କାରଣ ସେ ଜାଗାରେ ଭୂତ ଥିବାର ଆଶଙ୍କା ଥିଲା । ବାହାଦୂରୀର ପରୀକ୍ଷା କେମିତି, ଏହା ତାଙ୍କୁ ଜଣା ପଡ଼ିଯାଇଥିଲା । ଏଥିପାଇଁ ସେ ଫେରିପାରିଥାନ୍ତା । ତା’ ଦଳର ଅନ୍ୟ ପିଲାମାନେ ମଧ୍ୟ ଏହି ନିର୍ଣ୍ଣୟରେ ପହଞ୍ଚିଥିଲେ । ତାକୁ ଅନୁଭବ ହେଲା କି ଏ ନିର୍ଣ୍ଣୟ କେବଳ ତା’ର ଏକା ନ ଥିଲା । ସେମାନେ ସମସ୍ତେ, ଯେତେ ଶୀଘ୍ର ସେଠାରୁ ଦୌଡ଼ି ପଳାଇପାରିବେ, ସେତେ ଶୀଘ୍ର ସେଠାରୁ ଦୌଡ଼ିବାକୁ ଲାଗିଲେ ।

ବିଦ୍ୟାଳୟ ଫେରି ସେମାନେ ଦେଖିଲେ ଯେ ଯେଉଁ ଦଳସବୁ ତାଙ୍କ ଆଗରୁ ବାହାରିଥିଲେ ସେମାନେ ସମସ୍ତେ ଫେରିଆସିଥିଲେ । ଜଣାପଡ଼ିଲା କି ଶ୍ମଶାନ ପର୍ଯ୍ୟନ୍ତ ପହୁଞ୍ଚିବାର କାହାରି ସାହାସ ହୋଇ ନ ଥିଲା ।

ଠିକ୍ ଏହି ସମୟରେ ମଥା ଉପରେ ଧଳା କପଡ଼ା ଓଢ଼େଇ ଗୋଟିଏ ପିଲା କାନ୍ଦି କାନ୍ଦି ପହୁଞ୍ଚିଥିଲା । ତା’ ସାଥିରେ ଜଣେ ଶିକ୍ଷକ ମଧ୍ୟ ଥିଲେ । ସେ ଭୂତ ବନିଥିବା ପିଲାମାନଙ୍କ ଭିତରୁ ଜଣେ ଥିଲା । ବହୁତ ଡେରି ପର୍ଯ୍ୟନ୍ତ ସେ ଶ୍ମଶାନ ରେ ପ୍ରତୀକ୍ଷା କରିଥିଲା । ଯେତେବେଳେ କେହି ସେଠାକୁ ଆସିଲେ ନାହିଁ ସେ ଡରିଯାଇଥିଲା ।





କାନ୍ଦି କାନ୍ଦି ସେ ବାହାରକୁ ଆସିଲା । ରାସ୍ତାରେ ପ୍ରତୀକ୍ଷା କରୁଥିବା ଶିକ୍ଷକ ତାକୁ ଫେରାଇ